କହିଲେ, "ମୁଁ ମନୁଷ୍ୟ ହୋଇ ଅଛୁ । ସେମାନେ ଆଉ ସେ ପଦବାଚ୍ୟ ନାହାନ୍ତି ।"

ଇଣ୍ଟରୋଗେସନ୍ ସରିଗଲା । ରାଧାମୋହନ ଘରକୁ ଫେରିଲେ । ଶୁଣିପାରିଲେ, ଚନ୍ଦ୍ରାମଣିଙ୍କୁ ଗିରଫ୍ତାର କରି କୁଆଡ଼କୁ ନେଇଗଲେଣି । ସେ ବ୍ୟସ୍ତ ହୋଇ ଗଲେ ସେ ହୋଟେଲକୁ, ସୁଶୀଳାଙ୍କୁ ସାନ୍ତ୍ୱନା ଦେବା ପାଇଁ । ରାଧାମୋହନଙ୍କୁ ଦେଖି ରାଗରେ ଅଣ୍ଡ ଥର ସୁଶୀଳା କହିଲେ, "ତୁମେ ତାଙ୍କ ମୁଣ୍ଡ ଖରାପ କଲ । ତୁମର ତ ଲଙ୍ଗୁଡ଼ କଟା ହୋଇଛି, ତାଙ୍କ ଲାଙ୍ଗୁଡ଼କୁ ତୁମେ କାଟିଲ । ତୁମେ ଯାଅ ଏଠୁ, ମୁଁ କଛୁ କଥାବାର୍ତ୍ତା ହେବାକୁ ଚାହେଁ ନାହିଁ ।" ସେଠାରୁ ଫେରିଆସି ରାଧାମୋହନ ଭାବିଲେ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ଶରତଙ୍କୁ ଦେଖାକରି କହିବେ ଅକାରଣରେ କାହିଁକି ଚନ୍ଦ୍ରାମଣିଙ୍କୁ ଗିରଫ୍ତାର କରାହେଲା । ଟେଲିଫୋନ୍ ଉଠାଇ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ଏକ ଲାଇଟ୍‌ନିଙ୍ଗ୍ କଲ୍ କଲେ । ସେପଟି ଜିଲ୍ଲା ମାଜିଷ୍ଟ୍ରେଟ୍ ଫୋନ୍ ଧରିଲେ ମଧ୍ୟ ରାଧାମୋହନଙ୍କ ନାମ ଶୁଣି ହଠାତ୍ ଛାଡ଼ିଦେଲେ । ରାଧାମୋହନ ଜାଣିଲେ ସେ ଶରତ କୌଣସି ସମ୍ପର୍କ ରଖିବାକୁ ଚାହୁଁ ନାହିଁ । "ମନୁଷ୍ୟତ୍ୱ କ'ଣ ଏ ଦେଶରୁ ଚାଲିଗଲା ?"—ଦୀର୍ଘନିଶ୍ୱାସ ପକାଇ ମନକୁ ମନ ଏକଥା କହି ରାଧାମୋହନ ଗୀତା ଖୋଲି ପଢ଼ିବା ଆରମ୍ଭ କଲେ ।

ସେହିଦିନ ସୁଶୀଳା ପୁରୀ ଯାଇ ଶରତଙ୍କ ସହିତ ଦେଖା କରିବାପାଇଁ ଚେଷ୍ଟା କରିଥିଲା । କିନ୍ତୁ ତାଙ୍କୁ ବା ତାଙ୍କ ସ୍ୱାମୀ ଚନ୍ଦ୍ରାମଣିଙ୍କୁ ସେ ଆଦୌ ଚିହ୍ନି ନ ଥିଲା ପରି ଶରତ ସୁଶୀଳାଙ୍କୁ କହିଲେ । କିଛିଦିନ ପରେ ରାଧାମୋହନଙ୍କୁ ଯେଉଁ ଇଣ୍ଟରୋଗେସନ୍ ହୋଇଥିଲା ତା'ର ଟେପ୍‌ରେକର୍ଡ଼କୁ ପର୍ଯ୍ୟାଲୋଚନା କରି କେନ୍ଦ୍ର ଅଫିସ ସ୍ଥିର କଲେ, ରାଧାମୋହନଙ୍କ ନୈରାଶ୍ୟ ଷଟ୍ଟୋସ୍ଥି; ତାଙ୍କଠାରୁ ପୁନର୍ବାର କୌଣସି ନା କୌଣସି ଆନ୍ଦୋଳନ ଆଶଙ୍କା କରାଯାଇପାରେ । ଏଣୁ ତାଙ୍କୁ ବାହାରେ ଛାଡ଼ିଦେବା ଠିକ୍ ହେବ ନାହିଁ । ସେ ଗିରଫ୍ତାର ହେଲାବେଳେ ଗୀତା, କୋରାନ୍ ଓ ବାଇବେଲ ସବୁ ବାନ୍ଧି ସାଙ୍ଗରେ ନେଇଗଲେ ।

କିଛିଦିନ ପରେ ସୁଶୀଳାଙ୍କ ଗ୍ୟାରେଣ୍ଟିରେ ଚନ୍ଦ୍ରାମଣିଙ୍କୁ ମୁକ୍ତ ଦିଆ-ହୋଇଛି । ସେ ଭାରତକୁ ବର୍ଷକ ଭିତରେ ଆସିବେ ନାହିଁ ବୋଲି ଲେଖିଦେଇ କେନେଡ଼ା ଚାଲିଯାଇଛନ୍ତି ।

# ଡାହାଣୀ ଆଲୁଅ

ଉପେନ୍ଦ୍ର କିଶୋର ଦାସ

(ଏକ)

ପୁଣି ବର୍ଷା ହେଲା । ପବନ-ପହୁଡ଼ା ତାଳଗଛ ମଥାନ ଉପରେ ଚଉଦ-ମେଳଣର ଯୋଡ଼ି-ନାଗରା ବଜାଇ ।

ରାତି ଅନ୍ଧାର-ହଜା ଜଣବଣ ବଣେଇଁ ଛୁଟରେ, ଭଙ୍ଗା ମାଟି ଘର ଟିଏ, ବର୍ଷା ଝାଙ୍କର ଦାଉରେ ଛଣ ଛପରତକ ତାର କେଉଁକାଳୁ କୁଆଡ଼େ ଉଡ଼ିଗଲାଣି । କଣ୍ଟା-ବଣ ଭିତରେ ଖାଲି ଗୋଟାଏ ଉଈ ଢିହ, ଆଉ ଦଦରା କାନ୍ଥ କେତେ ଝଟ । ବତାସ ଦାଉରେ ହେତକ ବା ଏଇ ଲାଟିଟା ପଡ଼ିଯିବ ହଣ୍ଟେ କି ?

ଘଡ଼ିକ ପରେ ବର୍ଷା ଥମି ଆସିଲା । ଅଙ୍ଗାରବୋଳା ରଙ୍ଗ ଦେହରେ ବିଜୁଳି ଝଲମକ ମାରି ବତାସ ଝପଟିଗଲା ଗଜା-ଧାନ ଗଛ ମେଲରେ ଢେଉଲ ପକାଇ ଦେଇ ।

ଘର ପଛପଟ ଝଙ୍କା ବରଗଛ ଭିତରୁ କାଅଳୀ ଅନ୍ଧାର ଗଣ୍ଡିକ ପରି ଗୋଟାଏ ବାଦୁଡ଼ି ଉଡ଼ିଆସି ଆଉ ଗୋଟାଏ ଗଛରେ ଝୁଲିଲା । ଡେଣା ଝାପଟରେ ତା'ର ଗଛ ତଳେ ଟପ ଟପ ହୋଇ ବର୍ଷା ହୋଇଗଲା ଆଉ ଥରେ । ବିଲ ଗହୀର ଆର ପାଖେ ମଶାଣି ଦଣ୍ଡାରେ ସେତିକ ବେଳେ ଗୋଟାଏ ବଡ଼ ଆଲୁଅ ମସାଲ ପରି ଦପ୍ ଦପ୍ ହୋଇ ଜଳି ଉଠି ସେଠୁ ବରଗଛ ତଳଯାଏ ଆସିଲା । ତା'ପରେ ହଠାତ୍ ଲିଭିଗଲା ।

ଗଛ ଉପରେ ବାଦୁଡ଼ିଟା ଡମକ ପଡ଼ି କହିଲା, କିଏ ?

ଦଣ୍ଡକେ ଆଲୁଅଟା ପୁଣି ଜଳି ଉଠିଲା ଦାଉ ଦାଉ ହୋଇ । କହିଲା, ସେଇ—

"କିଏ ? ମୁଁ ତ ଚିହ୍ନି ନାହିଁ !"

—ଚିହ୍ନି ନାହଁ ? ଆଲୁଅ ହସିଲା, ଏଇ ଘର ପାଖରେ ବରଗଛରେ ଅଛୁଟି ? ଅନେକ ଦିନ ଆଗେ ଏ ଘରେ କିଏ ଥିଲା ଜାଣିନାହଁ କିଛି ?

—ନା, ଗୁରମାସ ହେଲା କମା ମୁଁ ଏଠିକି ଆସିଚି ।

—ସ୍ମରଣମାସ ମୋତେ ? ତେବେ ଆଉ ଜାଣିବୁ କୁଆଡ଼ୁ ? ସେ ଢେର ଦିନର କଥା । ବୋଧହୁଏ ତିନି କି ଚାରି ବର୍ଷ ହେଲାଣି । ଏ ଘରେ ସେତେବେଳେ ଥିଲୁଁ ମୁଁ ଆଉ ମୋର ସ୍ୱାମୀ । ସହାରରେ ଦୁଃଖ କ'ଣ, ଦିନକ ପାଇଁକି ଜାଣି ନ ଥିଲି ତାଙ୍କ ଲାଗି । କିନ୍ତୁ ଦଣ୍ଡକେ କ'ଣ ହୋଇଗଲାଟି ! ଆଲୁଅଟା ଥରେ ଥରେ ଅଣଉଠି ମିଞ୍ଜି ମିଞ୍ଜି ହୋଇଆସିଲା ।

ଦଣ୍ଡେ ଗଲା ।

ପୁଣି କହିଲା, ଆଜିକାଲି ଭାବିଲେ ସ୍ୱପ୍ନ ପରି ଲାଗେ ସେକଥା ସବୁ । ଏ ଅବସ୍ଥାରେ ବି ଗ୍ରୀତ ମନ୍ଥି ହୋଇଯାଏ କାହିଁରେ । କିନ୍ତୁ ଛାଡ଼ ସେ କଥା । ନୂଆକରି ସେ ଦୁଃଖ ଡାକି ଆଣିବାକୁ ମୋର ଆଉ ମନ ନାହିଁ ।

ବାଦଲଟା କେଁ କେଁ ହୋଇ ଗଛ ତଳ ଡାଳକୁ ଆହୁରି ଓହ୍ଲାଇ ଆସିଲା । କହିଲା, ନାହିଁ କୁହ, କୁହ ସେ କଥା । ଶୁଣିବାକୁ ମୋର ଭାରି ମନ ହେଉଚି ।

—ଶୁଣିବୁ ? ହଉ ଶୁଣ ତେବେ । ଆଲୁଅ ଆରମ୍ଭ କଲା : ଢେର ଦିନ କଥା ହୋଇଗଲାଣି । ଏଇକ୍ଷିଣା ଏମିତି କାନ୍ଥସବୁ ବଣ ହୋଇଯାଇଚି ସିନା, ଏଇ ଘର ଦିନେ ପୁଣି ଲୋକ ଗହଳରେ ଖାଲି ହସୁଥିଲା, ମୁଁ ଯେତେବେଳେ ପ୍ରଥମେ ଏଠିକି ଆସେଁ । ସ୍ୱାମୀ ମୋର କାହିଁକି କେଜାଣି କଟକକୁ ପଢ଼ା ଛାଡ଼ିଦେଇ ଘରେ ଆସି ବସିଥିଲେ । କମିତୀଘର ପରେ ଆଉ ସେ କଟକକୁ ଯାଇନାହାନ୍ତି । ସେକଥା, ସେଇ ପ୍ରଥମ ରାତି କଥା ମନରୁ ପାସୋର ଯିବ ନାହିଁ କେବେ । ଦୂର ସମ୍ପର୍କ'ର ଜଣେ ନଣନ୍ଦ ହେବେ ସେ ; ମତେ ଯେତେବେଳେ ଆଣି ଏଇ ଘରର ଗୋଟାଏ ବଖରା ଭିତରକୁ ପେଲିଦେଇ ବାହାର କବାଟ କିଳିଦେଲେ ଘର ଭିତରେ ଗୋଟାଏ କୋଣରେ ପିତଳ ଦୀପଟା ମିଞ୍ଜି ମିଞ୍ଜି ହୋଇ ଜଳୁଚି । ଘର ମଝିରେ ଖଣ୍ଡେ ଅର୍ଣ୍ଣସାଶ ଖଟ ଉପରେ ବିଛଣା ପଡ଼ି । କବାଟ ପାଖେ ଠିଆ ହୋଇ ପରମ ସଙ୍କୋଚରେ ଦେହ ଗୋଟାକ ମୋର ଝାଳରେ ବୁଡ଼ିଗଲା ।

ସ୍ୱାମୀ ଖଟ ଉପରେ ଶୋଇଥିଲେ, କାନ୍ଥ ଆଡ଼କୁ ମୁହଁକରି । ପାଇଜୋଡ଼ା ଝମ ଝମ ଶୁଣି ଫେରି ଚାହିଁଲେ । ତା'ପରେ ଖଟରୁ ଉଠିଆସି ମୋ ହାତ ଧରି ଡାକିଲେ, ଆସ !

ବରଡ଼ାପତ୍ର ପରି ଥରୁଥାଏ ମୋ ହାତ ଦିଟା ତାଙ୍କ ହାତ ଭିତରେ ସେତେବେଳେ । ଦଣ୍ଡେ ଗଲା, ଦୁହେଁଯାକ ଚୁପ୍‌ଚାପ୍ । ହାତକୁ ମୋର ଖୁବ୍ ଜୋରରେ ଚିମୁଟି ଦେଇ ସେ ହସିଲେ; କହିଲେ, ଆହା ଲଜ୍ଜାବତୀ ଲତା ! ଦୁ'ବର୍ଷ ଆଗରୁ ମୋର ଆଗରେ ପଡ଼ି ଘୋଡ଼ା ପରି ଡେଉଁଥିଲ ବାପଘରେ ତମର । ଲାଜ ମାଡ଼ୁ ନାହିଁ ଆଜି ଏତେ ଛଇ ହେବାକୁ ?

ମନେ ମନେ ହସିଲି । ସତରେ ତ, ପିଲାଟି ଦିନୁ ମୁଁ ଦାସଭାଇ ବୋଲି ପାଣି ପିଉ ନ ଥିଲି ଯାଙ୍କ ପେଇଁ ! ଏ ପୁଣି ମୋତେ ବାହା ହୋଇବସିବେ, ଏ କଥା କିଏ ଜାଣିଚ !

ଟାଣି ଟାଣି ସେ ମତେ ଖଟ ପାଖକୁ ନେଇ ଶୁଆଇଦେଲେ । ଉଢ଼ଣା କାଢ଼ିଦେଇ ମୁହଁକୁ ଦି' ହାତରେ ଟେକି ଧରି ଡାକଲେ—ରଢ !

ଜବାବ ଦେଲି ନାହିଁ ଲାଜରେ ।

କଥା କହିବୁ ନାହିଁ ମତେ ? ସେ ପଚାରିଲେ ।

ତଥାପି କିଛି କହିଲି ନାହିଁ ।

ଦି'ଟା ବର୍ଷରେ କ'ଣ ଏତେ ପର ହୋଇଗଲି ତୋ ପାଖେ ? କଥା ପଦେ କହିବୁ ନାହିଁ ? ହଉ ତେବେ ମୁଁ ଯାଉଛି । ସେ ଖଟ ଉପରୁ ଉଠିଲେ ଘର ଛାଡ଼ି ଚାଲିଯିବାକୁ । ବାଧ୍ୟ ହୋଇ କହିଲି, କ'ଣ ?

ସୁଖରେ ତାଙ୍କ ମୁହଁ ପୂରିଉଠିଲା । ଖଟ ଉପରେ ବସି ଦି' ହାତରେ ମତେ ତାଙ୍କ କୋଡ଼ ପାଖକୁ ଟାଣିନେଇ କହିଲେ, ଦି'ବର୍ଷ ତଳ କଥା ମନେ ପଡ଼ୁଚି ତୋର, ରଢ, ଖରାବେଳେ ଦିନେ ତମ ଭାଉଜ ଆମ ଦିହିଙ୍କି ଗୋଟାଏ ଘରେ ପୂରାଇ କବାଟ ଲଗାଇ ଦେଇଥିଲେ ଥଟ୍ଟାରେ ଅବେ ? ସେହିଦିନୁ ଜାଣିଲି, ତତେ ପାଇବା ଆଶା ଏମିତି ଅସମ୍ଭବ ନୁହେଁ ମୋ ପକ୍ଷରେ । ତା' ଆଗରୁ ତମ ଘରେ ତ କେହି ରାଜି ହେଉ ନ ଥିଲେ ମୋ ସାଙ୍ଗେ ତତେ ବାହା ଦବାକୁ, ନୁହେଁ ?

ଲାଜ ସଙ୍କୋଚ ଅନେକ କମିଆସିଲା ତାଙ୍କ କଥାରେ । କହିଲି, ବୋଉର କିନ୍ତୁ ମନ ଥିଲା ଭାରି ।

ମୁଁ ସେ କଥା ବୁଝିଥିଲି । ତା ନୋହିଲେ ଆମ ବୃନ୍ଦାବନ ତୋ ସାଙ୍ଗେ ବାହା ହବା କଥା ଯୋଉଦିନ ତମ ବାପା ମତେ କହିଲେ, ତମ ଘରକୁ ଯିବା ସେହିଦିନୁ ମୋର ସରିଯାଇଥାନ୍ତା ।

ସଂସାରରେ କନ୍ୟା ତମକୁ ଅପୂର୍ବ ହୋଇ ନ ଥାନ୍ତେ, ମୁଁ କହିଲି । ସେ ହସିଲେ ; କହିଲେ, ମିଳିଥାନ୍ତେ ପରା ! କିନ୍ତୁ କାହା ପାଇଁ ଆଜଯାଏ ମୁହଁରେ ଧରି ନ ଥିଲି ସେ କଥା ?

ଲଜ୍ଜା ଆଉ ଆନନ୍ଦରେ ଉଲୁସିଉଠି କହିଲି : ମୁଁ ଜାଣେ । ପାଗଳଙ୍କ ପରି ସେ ମତେ ଛାତି ଉପରେ ଭିଡ଼ି ଧରି କହିଲେ, ମୋ ଭାଗ୍ୟ, ମୋ ଭାଗ୍ୟ ସେ, ରଢ ! ଜୀବନରେ ସବୁଠୁଁ ବଡ଼ ଗୁହାରି ଭଗବାନ ମୋର ଶୁଣିଛନ୍ତି । ଆଜି, ଏତେ ପାଖରେ ତତେ ପାଇ, ତେବେ ବି କେମିତି ବିଶ୍ୱାସ ହେଉ ନାହିଁ ମୋର, ପାଇଛି ବୋଲି !

ମୁହିଁ ତାଙ୍କର ଅସ୍ତେ ଆସ୍ତେ ମୋ ୯୦ ପାଖକୁ, ଖୁବ୍ ପାଖକୁ ଲଇଁଆସିଲି । ଝିଡ଼ିକି ବାଟେ ମେଘୁଆ ପବନ ସେତିକିବେଳେ ଘର ଭିତରୁ ଦୀପଟା ଲିଭାଇଦେଇ ବାହାରିଗଲା ।

( ଦୁଇ )

ଏହିପରି କହି ଆଲୁଅ କ'ଣ ଭାବି ଟିକେ ତୁନି ହେଲା । ଗଛ ଉପରୁ ବାଦୁଡ଼ି ପଚାରିଲା, ହିଁ, ସେଉଠୁ ?

ଆଲୁଅ ପୁଣି ଆରମ୍ଭ କଲା ।

ପ୍ରାୟ ବର୍ଷେ ଚାଲିଗଲା ଏଥି ଭିତରେ । କିନ୍ତୁ ସେଇ ଦିନଟା ବିଶେଷ କରି ମୋ ଜୀବନ ଭିତରେ ମନେରହିବା ଭଳି । କାହିଁକି ନା, ସେହି ପହିଲି ଦିନୁ ମୁଁ ଜାଣିପାରିଲି ସେ ମତେ କେତେ ଭଲ ପା'ନ୍ତି । ସ୍ୱାମୀ, ଆଉ ଗୋଟିଏ ଆଈଶାଶୁ, ଏ ଛଡ଼ା ଏ କୁଳରେ ମୋର ଆଉ କେହି ନ ଥିଲେ । ଆଈଶାଶୁଙ୍କୁ ପୁଣି ଭଲ ଦିଶେ ନାହିଁ । ମତେ ସେଥିପାଇଁ ନୂଆବୋହୂର ନାଜ ଛାଡ଼ି ସବୁ କାମ କରିବାକୁ ହେଲା ସେହିଦିନଠୁଁ ।

ସେ ବି ଆଉ ମତେ ଛାଡ଼ି କଟକ ଗଲେ ନାହିଁ । ଯେମିତି ଆଖିରୁ ଦଣ୍ଡେ ଅନ୍ତର କରି ସେ ଚଳିପାରିବେ ନାହିଁ କେଉଁଠି ! ଶୋଇବା ଘରଟିରେ ସକାଳୁ ସଞ୍ଜଯାଏ ମୁହିଁ ଚାହାଁଚାହିଁ ହୋଇ ବହେଁଯାକ ବସିଥାଉଁ । କେତେ ଦେଶର କେତେ ଆଶ୍ଚର୍ଯ୍ୟ କଥା ପଡ଼େ । ଗପୁ ଗପୁ ସଞ୍ଜ ହୋଇଯାଏ, ଆମ କଥା ସରେ ନାହିଁ ।

ଦିନେ । ଏମିତି ସେଦିନ ଭାରି ବର୍ଷା । ସେ କୁଆଡ଼େ ଯାଇଥିଲେ । ଦାଣ୍ଡ ପିଣ୍ଡାରେ ଠିଆ ହୋଇ ଚାହିଁଛି ଦିଗବୁଡ଼ା ବିଲ ଅସରନ୍ତି ଭିତରେ ବର୍ଷାପବନର ଲୁଚକାଳି ଖେଳ ଆଡ଼କୁ । ସେ ପଛରୁ ଆସି ମୋ ଆଖି ବନ୍ଦ କରି ଧରିଲେ । ଚମକିପଡ଼ି କହିଲି: ମୁଁ ଜାଣେ—

ପଚାରିଲେ, କିଏ ?

ସେଇ...

ନାଁ ନ କହିଲେ ଛାଡ଼ିବି ନାହିଁ ।

ହସମାଡ଼ିଲା କଥା ଶୁଣି । କହିଲି : ମୁଁ ଜାଣେ ନାହିଁ, ଯା ।

ଆଖି ଛାଡ଼ି ମୋ କାନ୍ଧ ଉପରେ ହାତ ରଖି ସେ କେତେ ଶରଧାରେ ଡାକିଲେ— ରତି !

ଉଁ—

କେମିତି ବର୍ଷା ?,

ଭାରି !

ଏତେବେଳଯାଏ ସ୍ୱର ମନ କ'ଣ ହେଉଥିଲା ପରି ତାହାକୁ ନ ଦେଖି। ସେ ହସିଲେ ମୋ ଆଡ଼େ ଚାହିଁ।

ସ୍ୱର ନାକ ମାଡ଼ିଲା। ସେକଥା ଗୋଲେଇ ଦେବାକୁ ପଚାରିଲି, କୁଆଡ଼େ ଯାଇଥିଲ କି ଆଜି ?

କହିଲେ, ଆମ ଜମିଦାରଙ୍କ ଘରକୁ। ଅନେକ ଦିନ ପରେ ଆମ ବୁଢ଼ା ଜମିଦାରଙ୍କ ପୁଅ ବୃନ୍ଦାବନ ଆସିଛି। ଭାବିଲି, ଦେଖା କରିଆସେ ଟିକେ।

ବୃନ୍ଦାବନ ! ଏ ସେଇ ବୃନ୍ଦାବନ ନୁହେଁ ତ ? ଯାହା ସାଙ୍ଗେ ଏଥି ଆଗରୁ ମୋ ବାହାଘରର ସବୁ ଅସ୍ଥ ହୋଇଯାଇଥିଲା। ପଚାରିଲି, ବୃନ୍ଦାବନ କିଏ କହୋ ?

ଆଶ୍ଚର୍ଯ୍ୟ ହୋଇ ସେ ମୋ ମୁହଁକୁ ଚାହିଁଲେ। କହିଲେ, ଏତେ ଜଲ୍ଦି ଭୁଲିଗଲୁଣି ? ଦି' ବର୍ଷ ତଳେ ମୁଁ ଆଉ ବୃନ୍ଦାବନ ପରି ସାଙ୍ଗ ହୋଇ ତମ ଘରକୁ ଯାଉଥିଲୁଁ। ତୋ'ସାଙ୍ଗେ ପୁଣି ତା'ର ବାହାଘର ପ୍ରସ୍ତାବ ଚାଲିଥିଲା। ମନେ ନାହିଁ ?

କହିଲି, ହଁ ମନେ ପଡ଼ିଲା।

ଆଗେ ଆମ ଘରକୁ ଆସୁଥିଲା ବରାବର, ଯେବେ ଏ ଗାଁକୁ ଆସେ। ଆଉ ମୋ ବାହାଘର ପରେ ଆସିନାହିଁ। ଦିନେ ତୋ ନାଁ କହି ଡାକିଆଣିବି ତାକୁ।

କହିଲି, ନାହିଁ ନାହିଁ, ମୋ ନାଁ କାହିଁକି କହିବ ? ଛି-ଛି, ତମେ ତମର ଡାକିଆଣିବ।

ଆଚ୍ଛା, ହଉ, କହି ସେ ଲୁଗା ପାଲଟିବାକୁ ଘର ଭିତରକୁ ଚାଲିଗଲେ। ଭିତରଘରୁ ଟୋକେଇଟା କାଢ଼ି ପଣବା ବନେଇବସିଲି ରାତି ପାଇଁ।

( ତିନି )

ଦିନେ ସତରେ ସେ ବୃନ୍ଦାବନଙ୍କୁ ଡାକିଆଣିଲେ।

ସଞ୍ଜବେଳେ ବିଛଣା ପକାଇବାକୁ ଘର ଭିତରକୁ ଯାଇଛି, ବାହାରେ କାହା ପାଟି ଶୁଭିଲା। ଚାହିଁଲି, କବାଟ ପାଖେ ସେ ଆଉ ବୃନ୍ଦାବନ।

ମତେ ଦେଖି ବୃନ୍ଦାବନ ଦୁଆରମୁହଁରୁ ଟିକେ ପଛେଇଗଲେ। ବିଛଣା ପକାଇ ମୁଁ ତରବରରେ ସେ ଘରୁ ପଳାଇଗଲି। ଘର ଭିତରେ ତାଙ୍କ ଗପ ଶୁଭୁଥାଏ। ଜାଲିକବାଟି ପାଖେ ଚାହିଁଲି। ଏଇ ସେଇ ବୃନ୍ଦାବନ, ବରଷ ଦି'ଟାରେ ଏତେ ବଦଳି ଗଲେଣି ନା ? ଆଗ ପିଲାଳିଆ ଚେହେରା ଆଉ ନାହିଁ। ଏହିକ୍ଷଣି ଯେମିତି ପୁରା ବାବୁ।

ତାଙ୍କ ସଙ୍ଗେ ସେ ଗପ କରୁ କରୁ କହିଲେ, ଆଜିକାଲି ତୁ ତ ଖୋଦ୍ ଜମିଦାର। ଗରିବ ଘରେ ବସିଚୁ ବୋଲି କହିବାକୁ ବି ନାକ ମାଡ଼ିଲଣି ଏଣିକି।

ବୃନ୍ଦାବନ କହିଲେ, କେତେ ଥଟ୍ଟା କର ତମେ ଦାସଭାଇ ! ଏଇ ଘରେ ପିଲ୍ଲଟି କାଲରୁ ମୁଢ଼ି ଚୁଡ଼ା ଖାଇ ଖାଇ ପରା ଏ ଦେହରେ ଅଧେ ରକ୍ତ ହୋଇଥିବ । ସେକଥା କ'ଣ ଭୁଲିଗଲଣି ଏତେ ଶୀଘ୍ର ?

ତେବେ ଜମିଦାର...

ବୃନ୍ଦାବନ ଅସହିଷ୍ଣୁ ହୋଇ କହିଉଠିଲେ, ଫେର୍ ଯଦି ଜମିଦାର ଜମିଦାର ହେବୁ, ଆଉ ଆସିବି ନାହିଁ ଏଠିକି, ଜାଣିଥା ।

ସେ ହସିଲେ । କହିଲେ, କୋଉ ଏବେ ଆଜଯାଏ ଅସୁଥିଲୁ ? ଡାକିଲାଠଉଁ ସିନା !

ତଳକୁ ମୁହଁପୋତି ବୃନ୍ଦାବନ କହିଲେ; ନାଇଁ କାମଦାମ ଗହଳରେ ଆସି ପାରି ନଥିଲି । ଏଣିକି ବରାବର ଆସିବି ।

ଝିଙ୍କା ପାଖେ ଅଜାଣତରେ କେତେବେଳେ ମୋ ହାତକାଚ ବୋଧହୁଏ ଟିକେ ବାଜିଉଠିଥିବ, ବୃନ୍ଦାବନ ମୁହଁ ଫେରାଇ ଝିଙ୍କା ଆଡ଼େ ଟିକେ ଚାହିଁଲେ; ତା'ପରେ ହଠାତ୍ ଉଠି କହିଲେ, ଆଜି ଯାଉଚି ଦାସଭାଇ, କାମ ଅଛି । ଆଉ ଦିନେ ଆସିବି ।

ଆଗରେ ଆଲୁଅ ଦେଖାଇ ସେ ପଦାକୁ ଆସିଲେ । ତାଙ୍କ ପଛେ ପଛେ ବୃନ୍ଦାବନ । ଘରୁ ବାହାରିଲାବେଳେ କାହିଁକି କେଜାଣି ବୃନ୍ଦାବନ ଏ ଆଡ଼େ ସେ ଆଡ଼େ ଥରେ ଚାହିଁଲେ । ତା' ପରେ ପିଣ୍ଡାରୁ ଓହ୍ଲାଇ ଦଣ୍ଡକ ଭିତରେ ଗଛ ଗହଳି ଭିତରେ ଅଦୃଶ୍ୟ ହୋଇଗଲେ ।

ବୃନ୍ଦାବନଙ୍କୁ ଖଣ୍ଡେଦୂର ବଳାଇଦେଇ ସ୍ୱାମୀ ଫେରିଆସିଲେ । ପିଣ୍ଡା ଖୁଣ୍ଟକୁ ଆଉଜି ସେତେବେଳଯାଏ ଠିଆ ହୋଇଥାଏ ମୁଁ ତାଙ୍କୁ ଚାହିଁ ।

ପାଖକୁ ଆସି ପଚାରିଲେ, ଦେଖିଲ ବୃନ୍ଦାବନକୁ ?

ଅନ୍ୟଆଡ଼େ ମନ ଥିଲାପରି ଖାଲି କହିଲି—ହୁଁ ।

ଭାରି ଭଲ ପିଲାଟିଏ, ନୁହେଁ ? ସେ କହିଲେ ।

କହିଲି, କେଜାଣି ହେଇଥିବ !

ତହିଁ ଆରଦିନ ବୃନ୍ଦାବନ ପୁଣି ଆସିଲେ ଆମ ଘରକୁ ବୁଲି । ଦାଣ୍ଡଘରେ ତାଙ୍କୁ ବସାଇ ସ୍ୱାମୀ ମତେ ଆସି ପଚାରିଲେ, ମା' କୋଉଠି ?

ପୂଜା କରୁଛନ୍ତି ଆରଘରେ । କାହିଁକି ?

ବୃନ୍ଦାବନ ଖୋଜୁଛି, ଦେଖା କରିବ ।

ବୃନ୍ଦାବନଙ୍କୁ ଡାକିବାକୁ ସେ ଚାଲିଗଲେ ।

ମା'ଙ୍କ ସାଙ୍ଗେ ଦେଖାକରି ଫେରିଲାବେଳେ ଆଡ଼ହୋଇ ମୁଁ ଘର ଭିତରକୁ ପଶିଗଲି । ପିଣ୍ଡାରେ ବୃନ୍ଦାବନ ମତେ ଦେଖିପାରି ପଚାରିଲେ, ସେ କିଏ, ରତି ନା, ବାସନ୍ତି ?

ସେ କହିଲେ, ହଁ ।

ମଲା, ମତେ ପୁଣି ଏତେ ନାକ ! ସେଦିନ ମୋ'ରି ଆଗରେ ଲଙ୍ଗଳା ହୋଇ ଡେଉଁଥିଲା ପରା ! ଆଜି ପୁଣି ଖାଉଜ ଆହିନ ଦଖଲ କରି ବସିଲେଣି । ନାକ ଛୁଡୁ ନାହିଁ ତଥାପି ।

ସେଉଠୁ ମତେ ଲକ୍ଷ୍ୟ କରି ବଡ଼ ପାଟିରେ ବୃନ୍ଦାବନ କହିଲେ, ମୁର୍ତ୍ତି ଆଉ ନଢ଼ିଆ, ବୁଝିଲ ଖାଉଜବୋଉ, ଆଜ ନ ଖାଇଲେ ତମ ଶ୍ରୀହସ୍ତରୁ ମୁଁ ଉଠୁ ନାହିଁ ଏଠୁଁ, ଜାଣିଥା ।

ଆଳୁ ଗୋଟାକରେ ମୁର୍ତ୍ତି ନଢ଼ିଆ ସଜାଡ଼ି କବାଟ ଯାଏ ଗଲି, ଯୋଉ ଘରେ ସେମାନେ ବସିଥିଲେ । ଭିତରକୁ ଯିବାକୁ କେମିତି ଖାଲି ନାକ ମାଡ଼ିଲା ।

ଘର ଭିତରୁ ସ୍ୱାମୀ ଡାକିଲେ, କାହିଁ, ଆସିଲ ! ବୃନ୍ଦାବନ ଏଣେ ଅଥୟ ହେଲଣି ।

ମୁଣ୍ଡରେ ଲୁଗା ଟିକେ ଟାଣିଦେଇ ଘର ଭିତରକୁ ଗଲି ।

ମୋ ଆଡ଼କୁ ଚାହିଁ ହସି ହସି ବୃନ୍ଦାବନ କହିଲେ, ଏତେ ପର ହୋଇଗଲି ମୁଁ ? ମତେ ଚିହ୍ନି ପାରୁଛ ନା ?

କିଛି ଜବାବ ଦେଲି ନାହିଁ ।

ସ୍ୱାମୀ କହିଲେ, ମଲା, ବୃନ୍ଦାବନଟାକୁ ଏତେ ନାକ ପଡ଼ୁଛ !

ମତେ ମନେ ପଡ଼ୁଛି ? ବୃନ୍ଦାବନ ପୁଣି ପଚାରିଲେ ।

ବାଧ୍ୟ ହୋଇ କହିଲି, ହଁ ।

କାହିଁ, କିଛି ତ ପଚାରିଲ ନାହିଁ !

କ'ଣ ପଚାରିବ ?

ବାପା ହେଲକା ତମର କେମିତି ଅଛନ୍ତି ? ଆଉ, ଆଉ ଗୋଟାଏ କଥା...

ଆଶ୍ଚର୍ଯ୍ୟ ହୋଇ ତାଙ୍କ ଆଡ଼େ ଚାହିଁଲି ।

ସେ କହିଲେ, ଆଉ ମୁଁ ତମକୁ ଏଣିକି ଖାଉଜବୋଉ ବୋଲି ଡାକିବ ନା ସେଇ ରତି ବୋଲି ଡାକିବ ? ବୃନ୍ଦାବନ ବଡ଼ପାଟି କରି ହସିଉଠିଲେ ।

ମଲା ଯା, ନିଆଁ ଲଗା ବଗୁଡ଼ାଟା ଭିତର ଘରକୁ ପଶିଲଣି, କହି ମୁଁ ସେଠୁ ପଳାଇଆସିଲି ।

( ଏଗାର )

ସେଇ ଦିନଠାରୁ ବୃନ୍ଦାବନ ପ୍ରାୟ ସବୁଦିନେ ଆସନ୍ତି ଆମ ଘରକୁ । ଆସିଲେ ମୋ ସଙ୍ଗେ ଥଟ୍ଟା ନକଲି ହେବା ଯେମିତିକି ତାଙ୍କର ଗୋଟାଏ କାମ ହୋଇଛି । ମତେ କିନ୍ତୁ କାଠ କାଠ ଲାଗେ କେମିତି ଆଗ ପରି ତାଙ୍କ ସଙ୍ଗେ ସହଜ ଭାବରେ ମିଶିବାକୁ । କିନ୍ତୁ ସେ କ'ଣ ଛାଡ଼ିବା ଲୋକ ! ଏମିତି କଥା ପଦେ ପଦେ ପଚାରି-ବସନ୍ତି ଯେ ଜବାବ ନ ଦେବାକୁ ବାଟ ନ ଥାଏ । ସ୍ୱାମୀ ଦିନେ ଦିନେ ଟିକେ ବିରକ୍ତ ହୁଅନ୍ତି । କହନ୍ତି, ଯେ ଏତେ କାଳ କରୁଛି, ତତେ କ'ଣ ଭଲ ଲାଗୁଛି ତା ସଙ୍ଗେ ଦୁଗୁଣେଇ ହବାକୁ ? ମୋ ଉପରେ କି ତାଙ୍କ ଉପରେ ବିରକ୍ତ ହୋଇ ସେ ଏ କଥା କହନ୍ତି, ମୁଁ ବୁଝିପାରେନା । କିନ୍ତୁ ଆଜି ଭାବୁଛି, କେଜାଣି ଉଚିତ ଥିଲା ମୋର ସେତିକିବେଳେ ସେକଥା ବୁଝିପାରିବା !

ଜୀବନଭରି ଏ ଦୁଃଖ ଯନ୍ତ୍ରଣା ଯାହା ହେଲେ ମତେ ଆଉ ସହିବାକୁ ପଡ଼ି ନ ଥାନ୍ତା । କିନ୍ତୁ କ'ଣ ହବ ! ସୁଖସୌଭାଗ୍ୟର ଦିନ ତ ମୋର ସରିଆସିଥିଲା ତାଙ୍କ ହିସାବରେ, ଯିଏ ଏ ଦିନରାତି କରୁଛନ୍ତି ।

ଦିନେ ସକାଳେ, ମେଘ ଛାଡ଼ିଯାଇ ସେଦିନ ଗଛପତ୍ର ଦିହରେ କଅଁଳ ସୁନେଲି ତବକ ଜଡ଼ିଯାଇଛି । ଅଗଣାରେ ବଛଣା ଭଳିଆ ଖରାରେ ଦଉଛି । ଘର ଭିତରୁ ସେ ଡାକିଲେ—ରଥ !

ତରତରରେ ଶେଜ ଚଦରଆ ମେଲାଇ ଦେଇ ଘର ଭିତରକୁ ଆସିଲି । ଖଟ ଉପରେ ସେ ବସିଥିଲେ । କହିଲେ, ବସ୍ ଟିକେ, କାମ ଅଛି ।

ପାଖରେ ଯାଇ ବସିଲି । ମୋର ଗୋଟାଏ ହାତ ତାଙ୍କ କୋଳ ଉପରକୁ ଟାଣିନେଇ ସେ କହିଲେ, ଏତେ ଦିନ ତ ଦୁଃଖକଷ୍ଟରେ ଚଳିଗଲା ; ଏଣିକି କ'ଣ ହବ ?

ଆଶ୍ଚର୍ଯ୍ୟ ହୋଇ ପଚାରିଲି, କ'ଣ ଚଳିଗଲା ?

ଆମରି ଘରକଥା କହୁଛି । ମୁଁ ତ ବର୍ଷେ ହେଲା ଗାଁରେ ଆସି ବସିଲି । କଟକରେ ଥିଲେ ଯୁଦ୍ଧର ବାଜାର ଖଣ୍ଡେ କୋଉଠି ଦେଖିଥାନ୍ତି ଅବା ! ଘରେ ବସି ଖାଇଲେ କେତେ ଦିନ ଯିବ ? ଜମିବାଡ଼ି ଗୁଡ଼ାଏ ସେମିତି ଥାଆନ୍ତା ଭଲ, ପେଟପାଇଁ ଭାବନା ପଡ଼ନ୍ତା ନାହିଁ । ଏଣିକି କୋଉଁଠି ରୋଜଗାରର ଫନ୍ଦା ନ ଦେଖିଲେ ଚଳିବ କୁଆଡ଼େ !

ତେବେ କ'ଣ କଟକ ଯିବ ? ଡରି ଡରି ପଚାରିଲି ।

ତଳକୁ ମୁହଁ ପୋତି ସେ ଆସ୍ତେ ଆସ୍ତେ କହିଲେ, ତା' ଛଡ଼ା ଆଉ ଉପାୟ କ'ଣ ?

ଭୟରେ ଗୁଡ ଭିତର କ'ଣ ହୋଇଗଲା ମୋର ସେକଥା ଶୁଣି । ଗଳାକୁ ତାଙ୍କର ଦୁ' ହାତରେ ବେଢ଼ାଇ ଧରି ବିକଳ ହୋଇ କହିପକାଇଲି : ନାଇଁ, ନାଇଁ, ତମେ କେଉଁଠି ଯାଅନା । ମୁଁ ମରିଯିବି ତା'ହେଲେ । ତାଙ୍କ ଛାତିରେ ମୁହଁ ଲୁଚାଇ ଝର ଝର ହୋଇ କାନ୍ଦି ପକାଇଲି ।

କେତେ ଶରଧାରେ ସେ ମୋ ମୁହଁକୁ ଟେକିଧରି କାନିରେ ଲୁହ ପୋଛି-ଦେଲେ । ହସି ହସି କହିଲେ, ମୁଁ କ'ଣ ସତରେ କେଉଁଠି ଚାଲିଯିବି ତତେ ଛାଡ଼ି ?

ତଥାପି ସନ୍ଦେହ କରି ପଚାରିଲି, ଆଉ ଏଇକ୍ଷଣି କହିଲ ?

ମିଛରେ ସେମିତି କହୁଥିଲି ନା । ତେବେ ବୃନ୍ଦାବନ ଦିନେ ମତେ କହୁଥିଲା, ଜମିଦାରୀ ସିରସ୍ତାରେ ଏଇଠି ଖଣ୍ଡେ ଚାକିରି ଦେବ ।

ଆଗ୍ରହରେ କହିପକାଇଲି : ହଁ, ହଁ, ତମେ ସେଇଠି ଚାକିରି କର, ଭଲ ହବ । ମତେ ଛାଡ଼ି ଆଉ କେଉଁଠି ପଳାଅନା ।

ସେ କହିଲେ, ଆଜି ସଞ୍ଜବେଳେ ଆସିବ ସେ । ମୁଁ ବୁଝିକରି କହିବି ବୋଲି କହିଚି ତାକୁ ଚାକିରି କଥା ।

ତହିଁ ଆରଦିନ ସତରେ ସେ ଚାକିରି ପାଇଲେ । ବେଳ ଘଣ୍ଟାକଠଉଁ ଖାଇପିଇ ଚାଲିଯାନ୍ତି ସେ କଚିହରି । ସଞ୍ଜବେଳେ ଯାଇ ଫେରନ୍ତି ଘରକୁ । ଦିନେ ଦିନେ ରାତି ହୋଇଯାଏ ଅନେକ । ଆକୁଳ ଅପେକ୍ଷାରେ ଚାହିଁ ଚାହିଁ ସେଦିନ ଆଖିରୁ ପାଣି ଝରେ ।

ଦିନେ, ଖରାବେଳଠଉଁ ସେଦିନ ଭାରି ମେଘ ଉଠେଇଥାଏ । ସେ ଘରେ ନ ଥିଲେ । ଖଟ ଉପରେ ପଡ଼ି ପଡ଼ି ଶୋଇବାକୁ ଚେଷ୍ଟା କରୁଚି, ଦୁଆର-ମୁହଁ ପାଖେ ପାଦ ଶୁଭିଲା । ଚାହିଁ ଦେଖିଲି, ବୃନ୍ଦାବନ । ଧଡ଼ପଡ଼ ହୋଇ ଖଟ ଉପରେ ଉଠି ବସିଲି । ସେ ମୋ ପାଖକୁ ଆସି ହସି ହସି ପଚାରିଲେ, କିଦ ମାଡ଼୍ ନାଇଁ ପରା ଶୋଇ ଶୋଇ ?

କହିଲି, ନାହିଁ ।

କେମିତି ଲୋକ ସେ କେଜାଣି, କହୁଁ କହୁଁ ଆସି ଖଟ ଉପରେ ମୋ ପାଖଟାରେ ବସିପଡ଼ିଲେ । ପଚାରିଲେ, ବଡ଼ ମା' କାହାନ୍ତି ?

ସେଦିନ କାହିଁକି ଭାରି ଡର ମାଡ଼ିଲା ତାଙ୍କ ବ୍ୟବହାର ଦେଖି । କହିଲି, ସେ ଶୋଇଛନ୍ତି ।

ଦଣ୍ଡେ ଗଲା ।

ସେ ଆଗେ କଥା କହିଲେ । ଡାକିଲେ--ରାଧା !

କ'ଣ ?

ଦ' ବର୍ଷ ତଳକଥା ମନେପଡ଼େ ତୋର ? ସେଦିନ ଏମିତି ବର୍ଷା । ଓଳତଳ ପାଣିରେ ଭସାଇବାକୁ ମତେ ତୁ କାଗଜଡଙ୍ଗା ତିଆରି କରିବାକୁ କହିଲୁ । ପଚାରିଲି, କ'ଣ ଦବୁ ଡଙ୍ଗା କରିଦେଲେ ? ମନେପଡ଼େ, ସେଦିନ କହିଥିଲୁ ମୁଁ ତମକୁ ବାହା ହେବି । ସେଇଦିନୁ ଏ ଧାରଣାଟା ମୋ ମନରେ ଏକାବେଳକେ ଜଡ଼ିରହିଛି ।

ଆଜି ସ୍ୱାମୀଙ୍କର ଏ କି କଥା ! ଭାରି ଅଡ଼ୁଆ ଲାଗୁଥାଏ ମତେ । କ'ଣ କରିବି, କାଠ ପିତୁଳି ପରି ବସିରହିଲି ।

ସେ କହିଗଲେ : ଆଜଯାଏ ସେଥିପାଇଁ ସେମିତି ଏକୁଟିଆ ଅଛି । କେତେ କାଶାରୁ ସମ୍ବନ୍ଧ ଫେରାଇଦେଲିଣି । କାହା ପାଇଁ ଏ ସବୁ, ଜାଣୁ ? କାହା ରୂପ-ଗୁଣର ତୁଳନା ପୃଥିବୀ ଭିତରେ ଆଜଯାଏ ପାଇନାହିଁ ବୋଲି ସେଇଦିନୁ ଏମିତି ଏକୁଟିଆ ହୋଇ ଗୃହିଁ ବସିଚି, ଜାଣୁ, ରତି !

ବାହାରେ ଝର ଝର ହୋଇ ବର୍ଷା ଆରମ୍ଭ ହେଲା । 'ଦୁଆରୁ ଲୁଗା ତୋଳି-ଆଣେ' ବୋଲି କହି ସେଘରୁ କୌଣସିମତେ ପଳାଇ ଆସିଲି, ଏକାଥରକେ ମା' ଘୋଡ଼ଉଠି ଶୋଇଥିଲେ ।

ଗୋଡ଼ଶବ୍ଦ ଶୁଣି ମା ପଚାରିଲେ, କିଏ ? ଆସ୍ତେ ଅସ୍ତେ ପାଖକୁ ଯାଇ ତାଙ୍କ ଗୋଡ଼ ଘଷିବସିଲି । ଦାଣ୍ଡଘରକୁ ପୁଣି ଯିବାକୁ ମୋର ଆଉ ସାହସ ହେଲି ନାହିଁ ।

× × ×

ସେଦିନ ରାତିରେ, ଖାଇସାରି ଖଟ ଉପରେ ସ୍ୱାମୀଙ୍କ ପାଖରେ ଶୋଇ କହିଲି, ବୃନ୍ଦାବନ ଆଜି ଆସିଥିଲେ ଏଠିକି ।

ଭାରି ଆଶ୍ଚର୍ଯ୍ୟ ହୋଇ ସେ ପଚାରିଲେ, କେତେବେଳେ ? କହିଲି, ଦ'ପହରେ ତମେ ନଥିଲା ବେଳେ ।

କଥା ଶୁଣି ତାଙ୍କ ମୁହଁଟା କେମିତି କଳା ପଡ଼ିଗଲା । କହିଲେ, ଭାରି ବେହିଆ ଏ ବୃନ୍ଦାବନଟା । ତୁ ତା ସାଙ୍ଗେ ସାବଧାନ ହୋଇ ଚଳୁଥିବୁ । ତହିଁ ଆର ଦିନଠୁଁ ସେ କାମକୁ ଯିବା ବେଳ ବଦଳାଇଦେଲେ । ଦ'ପହରେ, ଟିକେ ଶୋଇ ଗୁଡ଼ି ନେଉଟିଗଲ ପରେ ବାହାରନ୍ତି; ଆସୁ ଆସୁ ରାତି ସେମିତି ଅନେକ ହୋଇଯାଏ । ଭାବିଲି, ଆଉ ବୋଧହୁଏ ବୃନ୍ଦାବନ ମତେ ବିରକ୍ତ କରିବାକୁ ଆସିବେ ନାହିଁ ।

( ପାଞ୍ଚ )

ବୃନ୍ଦାବନ କୁଣ୍ଡୁକ ଜାଣନ୍ତି ନା କଣ ! ଉପରଓଳି ସ୍ୱାମୀ ଦିନେ ଯେମିତି କାମକୁ ଚାଲିଯାଇଛନ୍ତି, ସେ କୁଆଡ଼ୁ ଆସି ପୁଣି ପହଞ୍ଚିଗଲେ । ନ ଦେଖିଲି ପରି ହୋଇ ମୁଁ ସେପଟରୁ ବାହାରି ଯାଉଥିଲି, ଡାକଲେ—"ରତି" ।

ବାଧ୍ୟ ହୋଇ ଫେରି ଚାହିଁଲି । ପଚାରିଲି, କାହିଁକି ଡାକୁଚ ? ମୋର କାମ ଅଛି ଯାଉଚି ।

କାମ ଅଛି ବୋଲି ଖଣ୍ଡେ ପାନ ବି ମିଳିବ ନାହିଁ ? ସେ କହିଲେ ।

ଭାରି ଚିଡ଼ ମାଡ଼ୁଥାଏ । କ'ଣ କରିବି, ପାନ ଆଣି ଦେଲି । ନଇଲେ, ଏ ଯଦି ଚିଡ଼ିଯା'ନ୍ତି, ସ୍ୱାମୀଙ୍କର ଚାକିରିଖଣ୍ଡ ଯେ ଯିବ ।

ଘର ଭିତରେ ଜଳାକବାଟି ପାଖରେ ସେ ଠିଆ ହୋଇଥିଲେ । ପାନ-ଥାଳିଆ ଛୁଇଁ ମୋ ହାତଟା ଧରିପକାଇ କହିଲେ, ମୋ କଥା ଶୁଣିବୁ ନାହିଁ ଥରେ ?

ବିରକ୍ତିରେ ହାତଟା ଛଡ଼ାଇନେଇ ପଚାରିଲି, କି କଥା ?

ସେ କହିଲେ, ଶୁଣି ବିଶ୍ୱାସ ଯିବୁ ମୋ କଥାରେ ? ମୁଁ···ମୁଁ ତ କେତେ ଆଶା କରି ଏଠିକି ଆସେ, ତୋ ମୁହଁରୁ ଖାଲି ପଦେ କଥା ଶୁଣିବାକୁ !

ହାଡ଼ ଜଳିଗଲା କଥା ଶୁଣି । କ'ଣ କରିବି, ଚୁପ୍ ହୋଇ ଶୁଣିବାକୁ ହେଲା ସବୁ । ସେ କହିଲେ, ଏ ଦି'ବର୍ଷ ଏକପ୍ରକାର ନିଶ୍ଚିନ୍ତ ହୋଇଥିଲି ତତେ ନ ଦେଖି । ଏଣିକି ସତରେ କହୁଚି, ମତେ ଖାଇବା ପିଇବା ବିଷ ପରି ଲାଗିଲାଣି ତୋ କଥା ଭାବି, ରତି ! ସତେ ମୋ ଠଉଁ ଏମିତି ଦୂରେ ହୋଇ ରହିବୁ ସବୁଦିନ ? ପାଖକୁ ଆସି ସେ ପୁଣି ମୋ ହାତ ଧରିଲେ ।

ଦିହ ଗୋଟାକ ଥରଉଠିଲା ମୋର ରାଗରେ । ଆଉ ସମ୍ଭାଳି ପାରିଲି ନାହିଁ । ଜୋରରେ ହାତଟା ତାଙ୍କର ଛୁଞ୍ଚାଡ଼ିଦେଇ ଘରୁ ବାହାରିଗଲି । ଗଲାବେଳେ କହିଲି, ଭଦ୍ରଲୋକ ଯଦି ହୋଇଥିବ ତମେ, ଆଉ ଦିନେ ଏ ଘର ଦୁଆରେ ମୁହଁ ମାଡ଼ିବ ନାହିଁ, କହିଦଉଚି ।

ମୋ ପଛେ ପଛେ ସେ ବାହାରକୁ ଆସିଲେ । ଫେରିଗଲାବେଳେ ଖାଲି ଏତିକି ତାଙ୍କ ପାଟିରୁ ଶୁଭିଲା, 'ଆଚ୍ଛା, ହଉ' । ମୁଁ ଶୁଣି ନ ଶୁଣିଲା ପରି ଚାଲିଆସିଲି ।

ସବୁଦିନ ପରି ସେଦିନ ବି ସ୍ୱାମୀ ଅନେକ ରାତିରେ ଘରକୁ ଫେରିଲେ । ଖାଇବସି ପଚାରିଲେ, ଆଜି ବୃନ୍ଦାବନ ଆସିଥିଲା ?

କହିଲି, ହଁ ।

ଆଜିକା କଥା ତାଙ୍କ ଆଗେ କହିଦେବାକୁ ଭାରି ମନ ହଉଥାଏ । କିନ୍ତୁ କହିବି କହିବି ବୋଲି କିଛି କହିପାରିଲି ନାହିଁ ଲାଜରେ ।

ଆଉ କିଛି ନ ପଚାରି ଖାଇସାରି ସେ ଉଠିଗଲେ । ହାତ ଧୋଇ ଚୁପ୍ ହୋଇ ଯାଇ ଖଟ ଉପରେ ଶୋଇପଡ଼ିଲେ । ମୋର ବି ଆଉ ସାହସ ହେଲନାହିଁ ତାଙ୍କୁ ବିରକ୍ତ କରିବାକୁ ସେଦିନ ।

ଦି'ଦିନ ପରେ ଶୁଣିଲି, ସେ ଜମିଦାରଘର ଚାକିରି ଛାଡ଼ିଦେଇଛନ୍ତି ।

( ଛଅ )

ଏତିଯାଏ କହି ଆଲୁଅ ପୁଣି ଥରେ ଚୁପ ହେଲା । ତେଜ ତାର ଖୁବ୍ ମିଞ୍ଜି ମିଞ୍ଜି ହୋଇଆସିଲା; ସତେ ଏଇକ୍ଷିଣା ଲିଭିଯିବ !

ଗଛ ଉପରୁ ବାଦୁଡ଼ିଟା ବ୍ୟସ୍ତ ହୋଇ ଡାକିଲା, ମଲି ମଲି, କଥାଟା ଏମିତି ଅଧା କରି ଚାଲିଯିବ କି ? ସେଉଠୁଁ କ'ଣ ହେଲା କୁହ, କୁହ—

ଖୁବ୍ ଧୀରେ, ଖୁବ୍ ଚୁପ ଚୁପ, ଆଲୁଅ ସେଉଠୁ ଆରମ୍ଭ କଲା : ମୋ କଥା ଆଉ ବେଶି ନାହିଁ । ଏଣିକି ଯୋଉକଥା କହିବି, ବଡ଼ କରୁଣ, ବଡ଼ ବୁକୁଫଟା ସେ କାହାଣୀ । ଏ ଅପିଣ୍ଡ ପ୍ରାଣରେ ବି ଆଜିଯାଏ ସେ କଥାଗୁଡ଼ାକ ନିଆଁପରି ଜଳୁଚି, ଦିନରାତି !

ତା'ପରେ ସେ ତ ଚାକିରି ଛାଡ଼ିଦେଲେ । ମନେ ମନେ ଖୁବ୍ ଖୁସି ହୋଇ ଭାବିଲି, ଯା' ହଉ ଏଥର ବୃନ୍ଦାବନଙ୍କ ହାତରୁ ରକ୍ଷା ପାଇଲି ମୁଁ । କିନ୍ତୁ ଯାହା ପାଇଁ ଏତେ ଆନନ୍ଦ, ସେ ସ୍ୱାମୀ କାହିଁକି ଆଗ ପରି ମୋ ସଙ୍ଗେ ଆଉ ସହଜରେ ମିଶିପାରିଲେ ନାହିଁ ସେହିଦିନ ରାତିଠାରୁ । କେମିତି ମତେ ସବୁବେଳେ ଭଲକରି କଥା କହନ୍ତି ନାହିଁ, ଖାଲି କରଛଡ଼ା ଦେଇ ବୁଲନ୍ତି । ଦରକାର ପଡ଼ିଲେ ଯାହା ଦି'ଟା ଗୋଟାଏ କଥା କହନ୍ତି, ସେତିକି ବି ପୁଣି ମୁହଁ ଶୁଖେଇ । ଭାବିଲି, ମୋର ସୁଖର ଦିନ ଏଣିକି ସରିଆସିଲା ।

କାହିଁକି ସେ ମୋ ଉପରେ ଚିଡ଼ିଛନ୍ତି, ଦିନେ ଦିନେ ପଚାରିବାକୁ ଭାରି ମନହୁଏ; କିନ୍ତୁ ମୁହଁକୁ ଚାହିଁ ତାଙ୍କର ସାହସ ହୁଏନା ପଚାରିବାକୁ ସେକଥା । କାଳେ ବେଶି ଚିଡ଼ିବେ ! ରାତିରେ ସେ ଶୋଇପଡ଼ିଲା ପରେ ଚୁପ ଚୁପ ଅନେକ ବେଳଯାଏଁ କାନ୍ଦେ । ବେଳେ ବେଳେ ଭାବେ, ଏ ନିଉଚ୍ଛୁଣା ଜୀବନଟାରେ ଆଉ କଅଣ ଦରକାର ? ପୋଖରୀର ଅଥଳ ପାଣିରେ ଗୋଡ଼ ଖସାଇବାକୁ ଭାରି ମନହୁଏ । ଏଇ କଥା ଭାବି ନିଚ୍ଛଟିଆ ଦି'ପହରେ କେତେଥର ପୋଖରୀକି ମଧ୍ୟ ଯାଏ; କିନ୍ତୁ ଯାହା ଲାଗି ମୁଁ ଏ ଘରକୁ ଆସିଚି, ସେ ଯେ ମୋ ପେଟରେ । ମରିବାର ମୋର କ'ଣ ଅଛି ଏଇକ୍ଷିଣା ?

ଆସ୍ତେ ଆସ୍ତେ ଘରକୁ ଲେଉଟିଆସେ ।

ଆଜି କିନ୍ତୁ ମନେହଉଚି, ସେତେବେଳେ ଯଦି ମୁଁ ମରିଥାନ୍ତି, ତାହାହେଲେ କାମ ଛିଣ୍ଡି ଯାଇଥାନ୍ତା ଏକା ଥରକେ । ଆହୁରି ହିନସ୍ତା, ଆହୁରି ଦହଗଞ୍ଜ ସ୍ୱାଠୁଁ ବଳି, ଯାହା ମୋ କପାଳରେ ଥିଲା ତାକୁ ଭୋଗ କରନ୍ତା କିଏ ?

ଆଉ ସେଦିନ, ସେ ଦିନ ବି ଏମିତି ଝଡ଼, ଏମିତି ବର୍ଷା । ସାରା ସୃଷ୍ଟି ଉଜାଡ଼ି-ଦବାକୁ ଯେଉଁଦିନ ଯେମିତି କଳା ବଉଦ ମେଳରେ ପ୍ରଳୟର ଧାରା ଫିଟିଥାଏ । ପାଣି ପବନ ଜୋରରେ ଗଛପତ୍ରଗୁଡ଼ାକ ଠକ ଠକ ହୋଇ କମ୍ପୁଥାନ୍ତି । ସକାଳୁ ମୋ ସ୍ୱାମୀ କ'ଣ ଗୋଟାଏ ଅଳପ କଥାରେ ମୋ ଉପରେ ଭାରି ରାଗି କୁଆଡ଼େ ଚାଲି-ଯାଇଥିଲେ । ସଞ୍ଜ ଆସି ହୋଇଗଲା; ଘର ବାହାର ଚାହିଁ ଚାହିଁ ଆଖିରୁ ମୋର ପାଣି ମଲା, ସେ ଫେରିଲେ ନାହିଁ । ମୋ ମନ ଭାରି ଉଚାଟ ହୋଇଗଲା ! କାହିଁକି ମିଛରେ ତାଙ୍କ କଥାରେ ଜବାବ ଦେଇ ମଲି । ଏତେବେଳଯାଏ କୁଆଡ଼େ ଗଲେ ! କ'ଣ କଲେ !

ଦାଣ୍ଡପିଣ୍ଡାରେ କାହା ପାଦ ଶୁଭିଲା । ସେ ଆସିଲେ କି ଆଉ, ଦଉଡ଼ିଗଲି ଦାଣ୍ଡପିଣ୍ଡାକୁ । କିନ୍ତୁ ସେ କାହାନ୍ତି ? ଏ'ତ ବୃନ୍ଦାବନ !

ମତେ ଦେଖି ବୃନ୍ଦାବନ ଭାରି ବ୍ୟସ୍ତ ହୋଇ କହିଲେ, ରତି, ଆଲୁଅଟା ନେଇ ଆସିଲୁଟି ବାଡ଼ିଆଡ଼କୁ । ଦାସଭାଇଙ୍କି ବାଟରେ କ'ଣ ଗୋଟାଏ କାମୁଡ଼ି-ଦେଲା । ଜଲଦି ।

ଦଣ୍ଡକେ ଆଖି ଆଗରେ ମତେ ସବୁ ଅନ୍ଧାର ଦିଶିଗଲା । ଭାବିବାର ସେତେବେଳେ ମୋର ଆଉ ବେଳ ନ ଥିଲା । ଘର ଭିତରୁ ଆଲୁଅଟା ନେଇ ମୁଁ ପଦାକୁ ବାହାରି ପଡ଼ିଲି । ମୋ ଆଗେ ଆଗେ ବୃନ୍ଦାବନ ।

କ'ଣ କାମୁଡ଼ିଲା, କେମିତି କାମୁଡ଼ିଲା ! ସାପ ହେଇଥିବା ନୁହେଁ ତ ! ଏଇ ଚିନ୍ତା ମୋ ମୁଣ୍ଡରେ ପଶି ବୁଦ୍ଧି ଜ୍ଞାନ ସବୁ ମୋର କୁଆଡ଼େ ହଜାଇଦେଲା ! ଉତ୍କଣ୍ଠାରେ କେତେ ବାଟ ଚାଲିଆସିଲି ଜଣାଗଲା ନାହିଁ । ହଠାତ୍ ମନେ ହେଲା, ମୁଁ କୁଆଡ଼େ ଆସୁଚି । ଏଟା ଯେ ଗାଁ ଦାଣ୍ଡ, ଆମ ବାଡ଼ି ତ ରହିଗଲାଣି କେତେ ପଛରେ । ଆଉ ଆଗକୁ ଗଲି ନାହିଁ; ସେଇଠି ଠିଆ ହୋଇ ଡାକିଲି, ବୃନ୍ଦାବନ ଭାଇ !

କାହାନ୍ତି କିଏ ? ଏ ବଣ ବାଟ ଭିତରେ ମୁଁ ଏକା । ଡରରେ ଛାତି ଭିତର ରକ୍ତ ମୋର ପାଣି ହୋଇଗଲା ।

ମେଘ ଛାଡ଼ିଯାଇଥିଲା ସେତେବେଳକୁ । ବାଟ ଘାଟ ଯୁଝି ଯୁଝି କଳା ବଉଦ ଫାଙ୍କରେ ସେତେବେଳେ ଜହ୍ନଙ୍କର ଚୂନକାମ ହେଉଥିଲା ଅନ୍ଧାରର ଶିଉଳିଲଗା ଗାଇଜରେ । ମନରେ ଖୁବ୍ ହିମ୍ମତ କରି ଆଖି ବୁଜି ଘର ଆଡ଼କୁ ପଳେଇ ଆସିଲି ଏକା ଦଉଡ଼କରେ । କବାଟ ପାଖେ ଆସି ଥକା ହୋଇ ଠିଆ ହୋଇଗଲି ।

ଘର ଭିତରେ ଆଲୁଅ ଜଳୁଚି । ମୋ ସ୍ୱାମୀ ଘର ମଝିରେ ଠିଆ ହୋଇଛନ୍ତି କବାଟ ଆଡ଼କୁ ଚାହିଁ ।

ସାପ ଫାପ କାମୁଡ଼ିବା କଥା ତାହାହେଲେ ସବୁ ମିଛ । ଏତକ ବୃନ୍ଦାବନଙ୍କ ଫିକର ।

ମତେ ଦେଖି ସେ ପାଖକୁ ଆସିଲେ । ରାଗରେ ଦାନ୍ତ କାମୁଡ଼ି ପଚାରିଲେ, କୁଆଡ଼େ ଯାଇଥିଲୁ, ସତ କହ ।

ମୋ ମୁଣ୍ଡ ସେତେବେଳକୁ ବୁଲଉଥାଏ। କିଛି କହିପାରିଲି ନାହିଁ। ସେ ଗର୍ଜନ କରି କହିଲେ, ମୁଁ ସବୁ ଜାଣେ। ଦରକାର ନାହିଁ ଶୁଣିବା। ବାହାରିଯା ମୋ ଆଗରୁ। ହଠାତ୍ ସେ ମୋତେ ଖୁବ୍ ଜୋରରେ ପଛକୁ ପେଲିଦେଲେ।

ଟାଳ ସମ୍ଭାଳି ନ ପାରି ମୁଁ ମୁହଁମାଡ଼ି ପଡ଼ିଗଲି। ଦୁଆରବନ୍ଧରେ ପେଟଟା ଖୁବ୍ ଜୋରରେ ବାଡ଼େଇ ହୋଇଗଲା ପଡ଼ିଲାବେଳେ। ଗ୍ଳାନି ଚଗଚଗ ପାଣିଧାର ପରି ପାଟିବାଟେ ରକ୍ତ ବୋହିଗଲା, ଏତକ ମୋର ମନେ ଅଛି। ତା ପରେ ଆଉ କ'ଣ ହେଲା ଜାଣେ ନା; ଧୀରେ ଧୀରେ ମୋର ଚେତା ହଜିଗଲା। ସେମିତି ଅଚେତା ଅବସ୍ଥାରେ ପେଟରୁ କୁଆଡ଼େ ମୋର ମଲା ପିଲାଟିଏ ଜନ୍ମ ହେଲା। ତା ଧୀରେ ଧୀରେ ସନ୍ନିପାତ। ଏତେ କଷ୍ଟରେ ବଞ୍ଚିବା ଆଶା ଯାହା ଟିକେ ଥିଲା, ତା' ବି ଗଲା।

ତହିଁଆର ଦିନ ବୃନ୍ଦାବନ ଆଉ ସମ୍ଭାଳି ନ ପାରି ସବୁ କଥା ମୋ ସ୍ୱାମୀଙ୍କ ପାଖେ ମାନିଗଲେ। ସ୍ୱାମୀ ପାଗଳ ପରି ଦୌଡ଼ି ଆସି ମୋ ହାତ ଧରି ଭେ ଭେ ହୋଇ କାନ୍ଦିପକାଇଲେ। କହିଲେ, ରତି! ଏଇ ଥରକ ମତେ ତୁ କ୍ଷମା ଦେ। ମୁଁ ମଣିଷ ନୁହେଁ...ମୁଁ ପଶୁ। ତାଙ୍କ ବିକଳ ଦେଖି ଏତେ କଷ୍ଟରେ ପୁଣି ବଞ୍ଚିବାକୁ ମୋର ମନହେଲା। କିନ୍ତୁ କ'ଣ ହେବ; ଦିନ ତ ମୋର ସରି ଆସିଥିଲା। ଆଉ ଦଣ୍ଡକ ପରେ ମୋର ସବୁ ଶେଷ ହୋଇଗଲା।

ପିଲାଙ୍କ ପରି ମତେ ଦ' ହାତରେ କୁଣ୍ଢାଇ ଧରି ସେ କହିଲେ ରତି, ରତି! ଆ, ଫେରିଆ! ଆଉ ତୋ ଉପରେ ରାଗିବି ନାହିଁ, ଫେରିଆ।

ସେଇଦିନୁ ସେ ପାଗଳ ହୋଇ କୁଆଡ଼େ ବୁଲିଗଲେ।

ତା ପରେ ମତେ ସମସ୍ତେ ଏଇ ବିଲ ଆରପଟ ମଶାଣିକି ଆଣିଲେ। ମୋ'ର ସେ ମଲା ପିଲାଟିକି ଆଗରୁ ଆଣି ଏଇ ମଶାଣିରେ ଆଉଠାଏ କେଉଁଠି ପୋତିଥିଲେ। କୁଇଁଆଁର ସବୁଗ୍ରାସୀ ବାହୁବେଢ଼ାରେ ଘଡ଼ିକେ ଏ ଦେହ ଜଳିପୋଡ଼ି ପାଉଁଶ ହୋଇଗଲା। ବାକି ରହିଗଲା ଖାଲି ମୋଟାଏ ଆଲୁଅ, ଇମିତି ମୋର ଦେହ ପରି, ଖୁବ୍ ବଡ଼, ଖୁବ୍ ତେଜ।

ଆଲୁଅ ଲୁଚି ହେଲା।

ଗଛ ଉପରୁ ବାଦୁଡ଼ିଟା ଗାଟିକିଏ ପକ୍ଷୀଲା, ସେଇଥିପାଇଁ, ଅନ୍ଧାର ହେଲେ ବିଲ ପଡ଼ିଆରେ ଆଲୁଅ ଯଳାଇ ତମରି ପିଲଟିକି ଖୋଜି ବୁଲ କି ସବୁଦିନେ ?

ଉତ୍ତର ନାହିଁ। ଆଲୁଅ ସେତେବେଳକୁ ଲିଭିଯାଇଥିଲା।

... ... ... ...

ତୋଟା ଆଡ଼େ, ଗଛପତ୍ର ହୁଁ ହୁଁ କରାଇ କରାସ ପବନ ବାହୁନିଗଲା ସୁ-ସୁ-ସୁ...

●

# ସାପୁଆ

## କାଳନ୍ଦୀଚରଣ ପାଣିଗ୍ରାହୀ

କଟକ ଷ୍ଟେସନରୁ ରେଲରେ ଚଢ଼ି ଦକ୍ଷିଣମୁହାଁ ଗଲେ କାଠଯୋଡ଼ି ପାରି ହୋଇ ଆଗ ପଡ଼େ ବାରଙ୍ଗ, ତା'ପରେ ମଞ୍ଚେଶ୍ୱର । ମଞ୍ଚେଶ୍ୱରକୁ କେହି କେହି ରେଲଯାତ୍ରୀ କୌତୁକ କରି କହୁଥାନ୍ତି, ମ୍ୟାଞ୍ଚେଷ୍ଟର । ଏଠାରେ ଗୋଟାଏ କାଚ କାରଖାନା ହେବ ବୋଲି କେଉଁକାଳୁ ଘରତୋଳା ସରିଛି । କାରଖାନାର ଦେଖା ନାହିଁ । ଓଡ଼ିଶା ସରକାର ଏ ପଟକୁ ରାଜଧାନୀ ଘୁଞ୍ଚାଇବେ ବୋଲି ମଧ୍ୟ ଶୁଣାଯାଏ ।

ମଞ୍ଚେଶ୍ୱରଠାରୁ ପଟିଆ ଗାଁଟି ବାଟ ଦୁଇ ତିନି ମାଇଲ । ଗାଁ ମୁଣ୍ଡରେ ଗୋଟାଏ ବଡ଼ ଆମ୍ବ ତୋଟା ତଳେ ଧାଡ଼ିମୂଳିଆ ସାନ ସାନ ଛପର ଘର । ସୈନ୍ୟ ଛାଉଣି ତମ୍ବୁ ପଡ଼ିଲା ଭଳି ଦୂରକୁ ଦିଶେ । ଘରଗୁଡ଼ିକରେ ରହନ୍ତି ସାପ ଓ ସାପୁଆକେଳା ।

ରଜ ସମୟ । ଦିନକୁ ଦିନ ଏହି ଘରଗୁଡ଼ିକ ମଣିଷ ଗହଳିରେ ଫାଟି ପଡ଼ୁଛି । ରଜସଂକ୍ରାନ୍ତିଠାରୁ ଦଶହରାଯାଏ ସେଠାରେ ସାପୁଆମାନେ ଜମା ହୁଅନ୍ତି । ତା'ପରେ ସବୁ ଶୂନଶାନ୍ ।

ଦଳି ଦଳି ମରଦ ମାଇପେ କେତେ ରାଇଜ ବୁଲି ଫେରିଆସୁଛନ୍ତି । ମଦନ ବେହେରା ଝରଟାକୁ କାନ୍ଧରୁ ଓହ୍ଲାଇ ତଳେ ରଖିଦେଲା । ଝର ଭିତରେ ଗୋଟାଏ ପାଖରେ ଅସ୍ଥାୟୀ କୁଡ଼ିଆ କରିବାକୁ ଏକ ରକମ ଫୋଲ୍ଡିଂ ଛାଟି, ଲୁଗା, କନ୍ଥା, ହାଣ୍ଡି ପଲମ; ଆରପାଖେ ସାନବଡ଼ ଚକା ଚକା ପେଡ଼ି ।

ସାନ ପେଡ଼ିରେ 'ଗୋବିନ୍ଦ ମୂଷା' । ନୂଆ ବୋହୂ ହୋଇ କୂଅ ଭିତରୁ ବେଗ ବେଗ କରି ସେ ପାଣି କାଢ଼େ, ମାନ୍ୟ ଲୋକ ଆସୁଥିବେ ବୋଲି ଏଣିକି ତେଣିକି ବୁହିଁ ଧାନ ଶୁଖାଏ, ପୁଣି ଦେଢ଼ଶୁର ଆସିଲେ ତରତର ହୋଇ ଘରକୁ ପଳାଏ ।

ବଡ଼ ବଡ଼ ପେଡ଼ିରେ ଅହିରାଜ, ନାଗ, ତମ୍ପ — କିଏ ସାତକୋଷିଆ, କିଏ ମଣିନାଗ, କିଏ କପିଳାସ ଅବା ହରିଶଙ୍କର ପର୍ବତରୁ ଧରାହୋଇ ଆସିଛନ୍ତି । ମଦନ ପେଡ଼ି ଫିଟାଇ ତାହା ଭିତରେ ଟିକିଏ ଫୁଙ୍କି ଦେଇ ଗାଏ—

"କଂସର ଘରଣୀ          ପଦ୍ମାବତୀ ରାଣୀ
ସେ କଲା ଧନ୍ଦାରେ ଉପାଃ
ଲକ୍ଷେ ଖାର ପଦ୍ମ          ଦେବୁ ରେ କହ୍ନାଇ
ନ ଥିବ ପାଙ୍ଗୁଡ଼ା ମିଶା
କ ଗୋବିନ୍ଦ ହରି ।"

ସାପଟା ଫଣା ଟେକି ଗର୍ଜନ କରେ, ଜିଭ ଲହ ଲହ କରି ସଜୋରରେ ମଦନ ଉପରକୁ ଚୋଟ ମାରେ । ଦେଖଣାହାରୀଙ୍କ ଛାତି ଦୁଲୁକିଉଠେ । ମଦନ ପାଟି କରେ, "ଖାଇଲୁ, ଖାଇଲୁ, ବୁଢ଼ା, ଗଦ ଅଛୁ ଶୁଙ୍ଘେଇଦେବ । ମାରିପାରିବୁ ନାହିଁ ।"

ହଣ୍ଡି ଆଗରୁ ମେଘ ଅନ୍ଧାର ଅମ୍ବୁ ତୋଟାରେ ଘନେଇ ଆସିଛି । ଟେମ୍ରୁ ଭଳି ଝିପି ଝିପି ପାଣି ବର୍ଷି ଆମ୍ବପତ୍ରରୁ ଟୋପା ଆକାରରେ ଅଧ୍ ଅଧ୍ ତଳକୁ ଖସୁଛି । ଖାର ବେହରୁ ଲଣ୍ଠନଟା ଫିଟାଇ ମଦନ ଆଲୁଅ ଜାଳିଲା । ଘର ଆଗ ସାନ ପିଣ୍ଡି ଉପରେ ସଉରୀ ତା'ର ମୁଣ୍ଡ ବୋଝଟାକୁ ଥୋଇଲା । ପିଠିରେ ଲୁଗା ଖାଉଁଳରେ ବନ୍ଧା ଯାଇଥିବା ଢ'ବର୍ଷର ପିଲାଟିକୁ ବୋଝ ପାଖରେ ରଖିଦେଇ ଚାଲିଲା ଘର ପଛଁଦୋକୁ ।

ମେଘୁଆ ହେଲେ ବି ଝାଳରେ ଦେହ ଓଦା ହୋଇଯାଉଛି । ଗିରପା ଖଣ୍ଡ ମୁଣ୍ଡରୁ ଫିଟାଇ ମଦନ ସେହି ଖାରକୁ ଆଉଜି ସେଥିରେ ଟିକିଏ ବସି ହେଲା । ତାହାର ସ୍ତ୍ରୀ ସଉରୀ ଘର ପଛଁରୁ ଗାର ମାଠିଆ ଧରି ବାହାରିଗଲା ପାଣି ଆଣିବାକୁ । ମଦନ ସେହିପରି ଖାରକୁ ଆଉଜି ହାତକଟା ଫତେଇ ପକେଟରୁ ବିଡ଼ି ଓଆସିଲ କାଢ଼ି ଲଗେଇଲା । ସ୍ତ୍ରୀ ପାଣି ଆଣି ରୋଷେଇ ଯୋଗାଡ଼ କଲା । ସେଥିପାଇଁ ଆଉ କାହାଠୁଁ ତା'ର କିଛି ସାହାଯ୍ୟ ଲୋଡ଼ା ନାହିଁ । ଏଣେ ମଦନ ମହା ଆରାମରେ ବିଡ଼ି ଟାଣୁଛି । କାହାରି ମୁହଁରେ କଥା ନାହିଁ । ପିଣ୍ଡା ଉପରେ ଥୁଆ ହୋଇଥିବା ଢ' ବର୍ଷର ପିଲାଟା ବି ଏକ ଅତି ଉଚ୍ଚ ଧରଣର ବିଦେଶୀ ନର୍ସିଂ ସ୍କୁଲରେ ଶିକ୍ଷିତ ହେଲା ଭଳି ଚୁପ ହୋଇ ପଚଗହଲର ପାଣି ଅପ ଅପ ଶୁଣୁଥାଏ ।

ବିଡ଼ିଟଣା ସରିଲା ପରେ ଟିକିଏ ଥଣ୍ଡା ପବନ ବାଜି ମଦନର ଆଖି ଦୁଇଟି ବୋଜେଇ ହୋଇ ଆସିଲା ।

ହାତରେ, ମୁହଁରେ, ଦେହରେ ଟୋପା ଟୋପା ପାଣି ପଡ଼ୁଥାଏ । ତେଣିକି ପରୁଆ ନ କରି ଉଦାମ ନିଦରେ ସେ ଶୋଇଗଲା ।

ସଉରୀର ଡୋହଲାରେ ନିଦ ଭାଙ୍ଗିଲାରୁ ସେ ଶୁଣିଲା, "ଉଠ୍ ତ, ଭିତରକୁ ଚାଲ୍ !" ନିଦ ମଳ ମଳ ହୋଇ ସେ ଉଠିଲା । ପାଣି ଡାଲଟା ନେଇ ହାତ ମୁହଁ

ଧୋଇ ଘର ଭିତରେ ପଶିଲା । ଗୋଟାଏ ପାଖରେ ଦ'ବର୍ଷର ପିଲାଟି ଶୋଇପଡ଼ିଛି । ଚୁଲିରୁ ନିଆଁ ତକ କମି ଆସିଲାଣି । ଟକ୍ ଟକ୍ ହୋଇ ମଜା ଯାଇଥିବା ବଡ଼ କଂସା ଭିତରୁ ଗରମ ଭାତ ଆଉ ଡାଲମଡ଼ା ଶୁଖୁଆ ତରକାରିର ବାସ୍ନା ବାହାରୁଚି ।

ଖୁସି ହୋଇ ମଦନ ପଚାରିଲା, "ଭାତ ତ ସହଳ ହୋଇଗଲା ।"

'ହଉ, ବସ୍', ସହଳ କ'ଣ ? ରାତି କେତେ ହେଲାଣି !'

ସତକୁ ସତ ପହରିଆ ଚଢ଼େଇ କୁମ୍ଭାଟୁଆ ଡାକ ଛାଡ଼ି ରାତି ଅଧ ହେବାର ଜଣାଇଦେଲେ । ପଡ଼ୋଶୀ ଘରମାନଙ୍କରୁ କାହାର ପାଟିତୁଣ୍ଡ ଶୁଭୁ ନାହିଁ । ଦୂରରୁ ରହି ରହି ଯୋଡ଼ାଏ କୁଲ କୁତା ବାଦୁଡ଼ିଆ କଣ୍ଠ ଗୁଳାରେ ସରୁସ୍ୱର ଲମ୍ବାଇ ଭୁକୁଛନ୍ତି ।

ଖାଇସାରିଲା ବେଳକୁ ଘର ଭିତରେ ଗଣ୍ଡେ ଖଜୁରି ପଟି ପଡ଼ା ହୋଇଥିଲା । ତାହାରି ଉପରେ ମଦନ ଲମ୍ବ ହୋଇ ପଡ଼ିଗଲା । ସଉଣୀ କେତେବେଳେ କ'ଣ ଖାଇ ଶୋଇଲା, ସେ ଖବର ତାକୁ ବୁଝିବାକୁ ହେଲା ନାହିଁ । ଘର ଭିତରେ ବି ଫିଲ୍ଟର ପରି ଆମ୍ବ ପଟରୁ ଚାଳ ଉପରେ ପୁଣି ଚାଳ ସନ୍ଧିରୁ ମଦନ ଆଉ ସଉଣୀ ଦେହରେ ଥପ୍ ଥପ୍ ପାଣି ପଡ଼ୁଥାଏ । ପେଡ଼ିଭିତରେ ସାପ ଗର୍ଜିଲା, ମୂଷା ଚିଁ ଚିଁ ହେଲା, ଦୂରରେ କୁଲ କୁତା ରହି ରହି ଭୁକିଲେ, ଚଟେଇ ଉପରେ ପଡ଼ି ମଦନ ସଉଣୀଙ୍କର ନାକ ବି ସେଥି ସଙ୍ଗେ ଡାକିଲା ।

କୋଳାପାଇ ଘର ସବୁ ରଜ ଗଲେ ଛପର ହୁଏ । ଗାଁଟାଯାକ ସମସ୍ତେ ତ ବାରମାଇଜ ବୁଲୁଥାନ୍ତି । ଛପର କରିବ କିଏ ? କବାଟ ଖଣ୍ଡମାନ ପୁଣି ଗିଲ, ପନକା ଆଉ ଆଉ ଘରକରଣା ଜିନିଷ ପଟିଆ ଗାଁର ଖବ ଖବୁସି ଲୁଗାତ ମଇଦ ପଡେ ରଖିଦେଇ ଯାଆନ୍ତି । ରଜକୁ ଲେଉଟି ଘର ଛପର କରି ବର୍ଷା ଦିନଟା ସେଠାରେ କଟାନ୍ତି ।

ସକାଳୁ ଉଠି ବୀନା ଦଲେଇ ଘରୁ ମଦନ ତାର କବାଟ ଖଣ୍ଡି ଆଣିବାକୁ ଗଲା । ଶିବ ପଧାନକୁ ଆଗରୁ କହିନା ଦେଇ ଯାଇଥିଲା, ନଡ଼ା ଆଣି ଘର ଛପର କରିବ । ଆଗ ବୀନା ଦୁଆରେ ପହଞ୍ଚି ଯାହା ଦେଖିଲା ସେଥିରେ ତାକୁ ତାଟକା ଲାଗିଲା । ବୀନା ଘରୁ କଂସା, ଲୋଟା, କବାଟ, ଗାଈ ସବୁ ବାହାର ଦାଣ୍ଡ ମଝିରେ ଗଦା ହୋଇଛି । ତାହା ଭିତରେ ମଦନର କବାଟ ଆଉ ପାଣିଶୁଆ ହେଁସ ଖଣ୍ଡେ ବି ସେମିତି ଗୁଡ଼ା ହୋଇ ପଡ଼ିଚି । ଦଲେଇ ବିଚରା ମୁଣ୍ଡରେ ହାତ ଦେଇ ବସିଚି, ଆଉ ତା'ର ଘରମଣିଷ ଘରୁ ବାହୁନା ପକେଇଚି ।

ଦାଣ୍ଡ ମଝିରେ କେତେ ଲୋକ ଛିଡ଼ା ହୋଇଛନ୍ତି । କାହାରି ମୁହଁରେ କଥା ନାହିଁ । ଜମିଦାରଙ୍କ ଗୁମାସ୍ତା ଅଉ ବେକରେ ହାଉଦା ପକାଇଥିବା ଅଦାଲତ

ପିଅନଙ୍କୁ ବି ସେଠାରେ ଦେଖିଲା । ଜମିଦାର ଗୁମାସ୍ତାଙ୍କୁ ସେ ଚହ୍ନେ । ପଗୁରି ବୁଝିଲା, ଖଜଣା ନାଲିସ ହୋଇ ଧନା ଦଳେଇର ଘର କ୍ରୋକ ହୋଇଛି । କ୍ରୋକ ଜିନିଷ ନିଲାମ ହୋଇ ଖଜଣାକୁ ପୈଠ ହେବ ।

ଧନା ଦଳେଇ ମଦନର ପିଲାଦିନର ସଙ୍ଗାତ । ମହାପ୍ରସାଦ ବନ୍ଧୁ ହିସାବରେ ବାହା ପୁନେଇରେ ଦେଖିବା ଦଆନିଆ ବି ଚଳେ । ଦହିଙ୍କ ଭିତରେ ପାଣି ଗଳେ ନାହିଁ । ଦୂରରୁ ମଦନକୁ ଦେଖିପକେଇ ଧନାର ଏମିତି କୋହ ଉଠିଲା ଯେ, ସେ ଆଉ ବସି ନ ପାରି ଗାମୁଛାରେ ଆଖି ପୋଛିଦେଇ ଘର ଭିତରକୁ ପଳେଇଲା । ତାହାର ଘର ମଣିଷର ବାହୁନା ଆହୁରି ତେଜି-ଉଠିଲା ।

ଜମିଦାରଙ୍କର ଏହି ମଧୂଆ ଗୁମାସ୍ତାକୁ ଦେଖିଲେ ମଦନର ହାଡ଼ ଜଳେ । ତା' ମୁହଁ ଚାହିଁବାକୁ ଇଚ୍ଛା ହୁଏ ନାହିଁ । ଏହି ଲୋକଟା କେତେ ସାହିରେ ଖଜଣା ବସେଇବାକୁ କେତେଥର ଡଗର ଧଇଲାଣି । ମଦନ କେବେହେଲେ ଯୋଗରୁ ସେଠାରେ ମୁହଁ ମୁରେଇ ପାରି ନାହିଁ । ମଧୂ ଗୁମାସ୍ତାକୁ ଦେଖିଲେ ମଦନ ବାଟ ବଙ୍କେଇ ଚାଲିଯାଏ । ତାକୁ ଦଣ୍ଡବତ ହେବାକୁ ଇଚ୍ଛା ହୁଏ ନାହିଁ । ତେବେ ଆଜି ଆଉ ଉପାୟ କ'ଣ ? ଧନା ଦଳେଇର ଘର କ୍ରୋକ୍ । ସେ କଥା ମଦନ ବୁଝିବ ନାହିଁ ତ ଆଉ କିଏ ?

ସିଧା ଯାଇ ଗୁମାସ୍ତାକୁ ପଚାରିଲା, "ବାବୁ ଆଜ୍ଞା, ଖଜଣା ବାକି ତା'ର କେତେ ହେବ କି ?"

ଗୁମାସ୍ତା ଫିଙ୍ଗା ଫୋପଡ଼ା କରି କହିଲେ, "କିରେ, ତା' ପାଇଁ କାହିଁକି ତୋ ମୁଣ୍ଡ ବଥେଇଲା ? ନିଜେ ତ ସ୍ୱରଟା ପଇସା ଖଜଣା ଦେଇପାରୁନୁ । କୁକୁଆଁକୁ କିଆଁ କାନ୍ଦ ଗରୁ !"

କଥାଗୁଡ଼ାକ ମଦନକୁ ବରୁଡ଼ି ମାଇଲା ଭଳି କାଟିଲା । ଆଉ ବେଳ ହୋଇଥିଲେ ପଦକୁ ପଦେ ଜବାବ ଦେଇଥାନ୍ତା । ବହୁକଷ୍ଟରେ ନିଜ ମୁହଁ ସମ୍ଭାଳି କହିଲା, "ନାହିଁ ଆଜ୍ଞା, ପଚାରୁଥିଲି ବୁଝିବି ବୋଲି । ମୋର ପରି କବାଟ ଖଣ୍ଡ ତା ଭିତରେ ଅଛି ।"

"ସେଥିକି କାହାରି ବଳ ନାହିଁ, ବୁଝିଲୁ ? ଧନା ତ ତୋର ଭାରି ଭାରୁସି ଲୋକ । କାହିଁକି, ତା' ପାଇଁ ଟଙ୍କା କେତୁଟା ଦେଇପକଉନୁ । ତୋର ହେଲେ କେତେ, ଆଉ କାହାର ହେଲେ କେତେ । ଖଜଣା ନାଲିସ୍, ବୁଝିଲୁ ! ତା' ଘରୁ ଯାହା ବାହାରିବ ସବୁ ନିଲାମ ହେବ ।"

“କେତେ ଖଜଣା, ସା’ନ୍ତ ? ସେଇ କଥା ଟିକିଏ ପଚାରୁଚ ! ଆମେ ଭିକାରି ମୁଣ୍ଡ, ଖଜଣା ଦେବାକୁ କାହୁଁ ସାହସ କରିବୁଁ ?”

“ଭିକାରି ମୁଣ୍ଡ କାହିଁକି ? ତମ ରୋଜଗାର ଯାହା ସେକଥା କ’ଣ ଆମକୁ ଲୁଚେଇବ ? ହଉ, ଭଲ ହେଲା । କହିଦେଟି ପିଅନ ବାବୁ, ଘାନା ଦଟେଇ ଉପରେ କେତେ ପାଉଣା ? ଏ ତାର ପ୍ରୀତି ବନ୍ଧୁ । ନଗଦ ଟଙ୍କା ଦେଲେ ତା’ ଜିନସ ସେ ରଖିବ ।”

ପିଅନ ବାବୁ ଝୋଳ ପଚେରିଆନା କାଢ଼ି ହିସାବ କରି କହିଲେ, “ଘର କପ୍ତିର ଖଜଣା ପୁଧମୂଲ ମିଶି ଦଶଟଙ୍କା, ଆଉ ଖର୍ଚ୍ଚାବର୍ଚ୍ଚା ହୋଇ ପାଞ୍ଚଟଙ୍କା ତେର ଅଣା । ଏରୂପ ଗାଏ ମୋଟ ପନ୍ଦର ଟଙ୍କା ତେର ଅଣା ।”

ଘରକୁ ଲେଉଟି ମଦନ ସାଙ୍ଗେ ସାଙ୍ଗେ ଟଙ୍କାତକ ଆଣି ପିଅନ ହାତରେ ଗଣିଦେଲା । ସାହି ଗୋଟାକର ଲୋକେ କାବା ହୋଇଗଲେ । ଜଣେ ଦୁ’ଜଣ ପୁରୁଣା ମଣିଷ ମଦନକୁ ଖୁବ୍ ସାବାସ୍ କଲେ । ମଧୁ ଗୁମାସ୍ତାଙ୍କ ମୁହଁଟା କେଦରା ପଡ଼ିଗଲା ।

ଦିନ ଆଠଟା ଯାଇଛି କି ନାହିଁ, ଚପରାସି ପିଆଦା ଧରି ଗୁମାସ୍ତା ଆସି କେଳା ସାହିରେ ହାଜର । “ଘର ପିଛା ଅଣାଏ ଲେଖାଁ ଖଜଣା ଦେବାକୁ ହେବ । ସମସ୍ତେ ତମେ ରୋଜଗାରପନ୍ତି କରୁଚ । ରାଜସ୍ୱ ନ ଦେବ କାହିଁକି ?”

ମଦନ କହିଲା, “ଆଜଯାକେ ତ ଦଉ ନ ଥିଲୁଁ; ଆଜି କାହିଁକି ଦବୁଁ ?”

ଗୁମାସ୍ତା ଯୋସା ହୋଇ କହିଲେ, “ଆଜଯାକେ ଦଉ ନ ଥିଲ, ତୁମକୁ ଦୟା କରି ଛାଡ଼ିଦିଆଯାଇଥିଲା । ଏବେ ତ ଘରଦୁଆର କରି ରହିଲଣି ।”

“ମାସ ଛ’ଟା ପରେ ରହିବୁଁ କି ନାହିଁ, ସେଥିପାଇଁ ଖଜଣା ଦେବୁଁ ?”

“ଦିନୁଟାଏ ରହିଲେ ବି ଖଜଣା ଫାଳିବ, ବୁଝିଲୁ ? ଦେଖିବୁ ବାକ୍‌ଚତୁରି ଆଉ ଏଣିକି ପଟିବ ନାହିଁ ।”

“ବାକ୍‌ଚତୁରି କ’ଣ, ବାବୁ ! ଆଜି ଖଜଣା ଦେଲେ କାଲି ତମେ ଘର କୋରଣି କରିବ । ଜମିଦାରଙ୍କର ଆମେ କ’ଣ ଖାଇଲୁ, ଯାହାଲାଗି ଯେ ଖଜଣା ମାଗୁଛ ? ଗଛରୁ ଆମ୍ବ କଷିଟାଏ କି ଗାଡ଼ିଆରୁ ମାଛଟାଏ ପାଇଁ ତ ଆମେ ଭଜନ ନୋହୁଁ । କୂଅରୁ ମୁନ୍ଦେ ପାଣି କାଢ଼ି ପିଇବାକୁ ତ ମନା । ତମେ ବାଟରେ ଚାଲୁଥିଲେ ଆମେ ତ ଯିବୁଁ ଅବାଟରେ । ଆଉ ଖଜଣା ଦେବୁଁ କେଉଁଥିପାଇଁ ? ପୁଣି ଆଜି ଆମେ ପଟିଆରେ ଥିଲେ କାଲି କଟକ, ତା’ଆରଦିନ ଢେଙ୍କାନାଳ; କାହାକୁ ଦେବୁଁ ରାଜସ୍ୱ ?”

ଗୁମାସ୍ତା ମଦନକୁ ଛାଡ଼ି ଆଉମାନଙ୍କୁ ପଚାରିଲା । ସମସ୍ତେ ଜବାବ ଦେଲେ, "ମଦନ ଯାହା କହିବ, ସେଥିରେ ଆମର ରାଜି ।"

ବଡ଼ ବଡ଼ ଆଖି ଦେଖାଇ ଗୁମାସ୍ତା ମଦନକୁ କହିଲେ, "ତୁଇ ତେବେ ସବୁର ଭିତରେ ମେଳିଆ । ଆଚ୍ଛା ହଉ, ରାଜସ୍ୱ ନ ଦେଲେ କ'ଣ ହୁଏ ବଳେ ବୁଝିବୁ ।"

ମଦନର ଆଖି ଦୁଇଟା ବି ଲାଲ ହୋଇଉଠିଲା । କ୍ଷଣରେ ହାତ ମାରି ସେ ଜବାବ ଦେଲା, "ହଁ, ବୁଝିଛି, ସେ ଧମକ ଆଉ କାହାକୁ ଦେଖେଇବ ।"

ଗୁମାସ୍ତା ରାଗରେ ଫେରିଯାଉଥିଲେ । ହଠାତ୍ କିଏ ଆସି ତାଙ୍କ ବାଟ ଓଗାଳି ଛିଡ଼ା ହେଲା । ଗୁମାସ୍ତା ଦେଖିଲେ, ମଦନର ବପୋ ଧଉରି । ସେ ହାତ ଯୋଡ଼ି କହିଲା, "ଆଜ୍ଞା, କେତେ ଖଜଣା, ମୁଁ ଦେବି ।"

ସାହିଯାକର ମରଦ ମାଇପେ ଗୁମାସ୍ତାଙ୍କୁ ଘେରିଗଲେ । ଯେତେହେଲେ ସରକାରୀ ଲୋକ । ତାଙ୍କୁ ଏମିତି ରଗେଇଲେ କ'ଣ ଭଲ ହେବ ? ଗଲା ଚାରି ବର୍ଷର ଖଜଣା ହିସାବ ହେଲା । ଟଙ୍କାଏ ଆଠଣା କରି ସବୁ ଖଜଣା ଦାଖଲ କଲେ । ଟଙ୍କା ଦେଖି ଗୁମାସ୍ତା ମିଜାସ୍ ଥଣ୍ଡା ପଡ଼ିଆସିଲା ।

ଖଜଣା ଦାଖଲ ପରେ ସାପୁଆମାନେ ବିଚାର କଲେ । ମଦନ କହିଲା, "ତମେ ସବୁ ଯାହା ଇଚ୍ଛା, କର । ମୁଁ ଏଥର ବାହାରିଲି ।" ବୁଢ଼ା ସାପୁଆ ନଧିଆ ପଚାରିଲା, "କୁଆଡ଼େ ଯିବୁ ?"

"ଯୁଆଡ଼େ ମୋର ଇଚ୍ଛା । ମୁଁ କାହାରି ପ୍ରଜା ହୋଇ ରହିବି ନାହିଁ ।"

ଜଣେ ଟାପରା କରି କହିଲା, "ପ୍ରଜା ହବୁ ନି ତ ଆଉ କ'ଣ ରଜା ?"

ସମସ୍ତେ ହସିଉଠିଲେ । ବୁଢ଼ା ନଧିଆ କହିଲା, "ଆରେ, ହସିବା କଥା ନୁହଁ । ଯୁଆଡ଼େ ଗଲେ ବି ତମର କ'ଣ ଯାହା ଅଛି ? ମୁଁ କହେ କ'ଣ କି, ସାପ ଖେଳେଇ ଏଣିକି ଆଉ ତମର ସବୁ ଚଳିବ ନାହିଁ । ଖଜଣା ଯଦି ଦେଲ ତେବେ ଗୁଣ୍ଠେ ପାଏ ଚାଷ ଆରମ୍ଭ କରିଦିଅ । କାହିଁକି ବାରବଇଜ ବୁଲିବ ? ଚାଷବାସ କରି ତ ମହାସୁଖରେ ଲୋକେ ଚଳୁଛନ୍ତି । ଆମର କାହିଁକି ଏତେ ହନସ୍ତା ? ଗାଁଭିତରେ କାହାଘରୁ ଚୋରି ଗଲା ତ ପୋଲିସ ଆସି ଆମ ଘର ଖାନତଲାସ କରିବ ! କାହାକୁ ସାପ ମାଇଲେ ତ ଦୋଷ ହେଲା ଆମର ।"

ମଦନ ମନକୁ ସେକଥା ପାଇଲା ନାହିଁ । ଚୋରି ଡକେଇତି ହେଲେ ପୁଲିସ ଆଗେ ତାଙ୍କୁ ସନ୍ଦେହ କରେ, ସତ । ମାଡ଼ ଫଇକତି, ଖାନତଲାସ ସବୁ କରେ ।

ଭଲ ଘରେ ଥିଲେ କି ଜମିବାଡ଼ି ଧନ ସମ୍ପତ୍ତି ଥିଲେ, ଏତେ ସାହସ କରନ୍ତା ନାହିଁ । ତେବେ ପ୍ରଜା ହେଲେ ଯେ, ଧାନା ଦଳେଇ ଭଳି ଜଣେ ନାଲିସରେ ଘର କୋରଖି ଆସିବ । ସେତେବେଳକୁ ପିଠିରେ ପଡ଼ିବ କିଏ ? ସଉରୀ ତ ତାକୁ ଆଗରୁ କେତେ ଲଗେଇଚି, ଖଣ୍ଡବଖରା ହେଲେ ବି ଚାଷ କରିବାକୁ । ଚାଷକାମ ସେ କେବେହେଲେ ଶିଖି ନାହିଁ । କରନ୍ତା କେମିତି ? ଯାହା ହେଉ, ମଦନ ଠିକ୍ କଲା, ସେ ଆଉ ଏ ଗାଁରେ ରହିବ ନାହିଁ । ତେବେ ତାର ସାଙ୍ଗସାଥୀ ବନ୍ଧୁକୁଟୁମ୍ବ ଭଉଣୀଙ୍କ ସାହୁଆଙ୍କୁ ଛାଡ଼ି ସେ ଯିବ କୁଆଡ଼େ ? ସମସ୍ତେ ତାକୁ ତ ଜାବୁଡ଼ି ଧରିଛନ୍ତି । ସେ କହିଲେ ତ ସମସ୍ତେ ଅଗ୍ନି ନିଆଁକୁ ଡେଇଁବେ ।

ମୁଣ୍ଡର ବାଳଗୁଡ଼ିକୁ ଆଙ୍ଗୁଠିରେ କୁଣ୍ଡେଇ କହିଲା, "ଏ ଲେଖେ କ'ଣ ଆମ ହାତରେ ଚାଷକାମ ହେବ ?"

ବୁଢ଼ା ନଧିଆ କହିଲା, "ନ ହବ କ'ଣ ଆମ ହାତରେ ? ବଣ ପାହାଡ଼ରେ ବୁଲି ସାପ ସରୀ ଜନ୍ତୁକୁ ଧରି ଯେ ପୋଷା ମନଉଚି, ତା ହାତରେ ନ ହବ ପୁଣି କ'ଣ ? ଆମରି ଭିତରୁ ତ ଶରୁରୀ, ଦାସିଆ ଘରଦୁଆର ଚାଷବାସ କରି ରହିଲେଣି ।"

ହଳ, ହଡ଼ା ପାଣି କାଦୁଅ ସଙ୍ଗେ ମଦନର ମନେପଡ଼ିଲା ନଈ, ପାହାଡ଼, ଜଙ୍ଗଲ । ଆକାଶରେ ଚଢ଼େଇ ଭଳି ଯେ ଦୁନିଆ ଖେଳୁଥିଲା ସେ ଆଜି ପଞ୍ଜୁରି ଭିତରେ ବନ୍ଦ ହେଲା ଭଳି ଘର କରି ରହିବ କେମିତି ?

ସଉରୀ ତାକୁ ବୁଝେଇ କହିଲା, "ଚାଷ ନ କଲେ ନାହିଁ । ଠାବ ଝଣ୍ଡେ କର୍ । ତେବେ ତ ଆଉ ଗୁମାସ୍ତା ଆସି ତଡ଼ିଦେବାକୁ ନ ଥିବ ।"

ସଉରୀ କେତେ କାକୁ ଲଗେଇଚି ଜମି କିଣି ଘର ତୋଳିବାକୁ । ତାହାର ସଙ୍ଗାତ ଧାନା ଦଳେଇ ବି ସାନନ୍ତିହ ଖଣ୍ଡେ ଦବ ବୋଲି ଛନ୍ଦ-ଛେକ ଯାଚିଲଣି । କାହାର ପ୍ରଜା ହେବ ନାହିଁ ବୋଲି ସେ କିଛି ଶୁଣୁ ନ ଥିଲା । ପୁଣି ନିଜର ସାଙ୍ଗମେଳ ଛାଡ଼ି ସାହିରୁ ସାଇଁ ଅଲଗା ଘର କରି ରହିବାକୁ ତାକୁ ଜମା ସୁଖ ଲାଗୁ ନ ଥାଏ । ତେବେ ବୁଢ଼ା ନଧିଆର କଥା ଶୁଣି ତା' ମନ ଟିକିଏ ଟଳିଲା ।

ସେହି ଦିନ ଧନା ଦଳେଇ ପାଖେ ସେ କଥା କହିଆସିଲା । ଧନା ଖୁସି ହୋଇ କହିଲା, "ଜରୁସମନ୍ ଢଆନଆ ପଛେ ହେବ । କହିଲଟା କାଲି କହିଦେଇ ପଚିଶ ତିରିଶ ଯାହା ଗୋଟାଏ ଦାମ୍ ବସେଇଦବା ।"

କାଠ ବାଉଁଶ ପାଇଁ ବେଶୀ ଧନ୍ଦ ହେବାକୁ ପଡ଼ିଲା ନାହିଁ । ସଉରୀ ନିଜ ବେକରୁ ସୁନା ସୋରିସିଆ ମାଳିଟା କାଢ଼ି ମଦନ ହାତକୁ ବଢ଼େଇଦେଲା । ମଦନକୁ

ସେ ନ ଦେଇପାରେ କ'ଣ ? ସେ ଯେ ତାକୁ ଜୀବନ ଦେଇଛି ! ସେତେବେଳେ ବୟସ ତା'ର ଷୋଳେଇଶି କୋଡ଼ିଏ । ସାପ କାମୁଡ଼ାରେ ଅଚେତା ହୋଇ ପଡ଼ିଥିଲା । ଯୋଗକୁ ମଦନ ଆସି ନ ଜୁଟନ୍ତେ, ଜାରମନ୍ତର ନ ଲଗାଏ କି ଗଦ ନ ପିଆଏ, ସଉଣ୍ଟି ବଞ୍ଚି ନ ଥାନ୍ତା । ହୋସ୍ ଆସିବାରୁ ଯେମିତି ଆଖି ଫିଟାଇଛି, ପଡ଼ିଲେ ନଜର ପଡ଼ିଲା ମଦନ ଉପରେ । ମୁଣ୍ଡରେ ବାବୁରି ବାଳ, ଗୁଣ୍ଡପାଖେ ଠେକା ଖଣ୍ଡେ ଭିଡ଼ା ହୋଇଛି, ନାକ ତଳେ କଳା ମଚମଚ ଦ'ପଟା ମୁଚ୍ଛ, ବାହାରେ ଗୋଟାଏ ରୁପା କଙ୍କଣ । ବଣିଆଘର ବିଧବା ଝିଅ ସଉଣ୍ଟିର ଛାତିଟା ଗୋଟିଏ ବଡ଼ ନିଃଶ୍ୱାସରେ ଫୁଲି ଉଠିଥିଲା । ତା'ପରେ କେବେ ଦିନେ ସେ ଜାତିକୁଳ ପଛକୁ ପକାଇ ତା'ର ଜୀବନଦାତା ସଙ୍ଗେ ବାହାରିଆସିଛି । ସେତେବେଳେ ମଦନ ତାକୁ ପଚାରିଥିଲା, “ଆମେ ତ କେଳାଜାତି, ଗାଁ ଗାଁ ବୁଲି ପେଟ ପୋଷୁଁ । ତୁ କ'ଣ ବୁଲିପାରିବୁ ?” ସଉଣ୍ଟି ଜବାବ ଦେଇଥିଲା, “ତୁ କେଳା ହେଲେ ତ ମୁଁ କେଳୁଣୀ ।” ଦୁହିଁଙ୍କ ଭିତରେ ଦିନେ ଛଡ଼ାଛଡ଼ି ନାହିଁ । ସେଦିନ କଥା ଦୁହେଁ ଆଜି ପାସୋରି ପକାଇଛନ୍ତି । ତେବେ, ଘର ଭିତରେ ଯେ ପିଲାଦିନୁ ରହିଆସିଛି, ତାକୁ ସବୁବେଳେ ବାହାରେ ବୁଲିବାକୁ ସୁଖ ଲାଗିବ କମିତି !

ସେଥିପାଇଁ ଏଣିକି ସବୁବେଳେ ସଉଣ୍ଟି ମନ ଉଚ୍ଛନ୍ନ ହୁଏ, ଘର ଖଣ୍ଡିଏ କରନ୍ତା । କଖାରୁ କଲରା ଗଛ ଦି'ଟା ଲଗାନ୍ତା । କଂସା, କେଟା ଓ ଗିଲ, ତକ ଦି'ଖଣ୍ଡ ରଖନ୍ତା । ଆଉ ତ ଖଣ୍ଡିଏ ଠାବ ଲୋଡ଼ା ।

ମଦନ ବେହେରାର ଘର ତିଆରି ବେଶୀ ଦିନ ଲାଗିଲା ନାହିଁ । ଆମ୍ବତୋଟା ତଳୁ ଛପର ଖଣ୍ଡେ ଉଠାଇନେଇ ଯାନା ଦଳେଇଠାରୁ କବଲ କରିଥିବା ନିଜ ଜାଗାରେ ରହିଲା । ଗିଲ, ତକ୍ତି, କଂସା, କେଟା, କଖାରୁ କଲରାରେ ଦିନଯାକ ଲାଗି ସଉଣ୍ଟିକୁ ତର ମିଳିଲା ନାହିଁ ।

ବୁଢ଼ା ନଧିଆ କହୁଥିଲା, “ହଁ, ସ୍ୟା ନା ଯେ ପୁଅପରିଆ ।” ମଦନକୁ ଟିକିଏ ଫୁରସତ୍ ମିଳିଲେ ସାଙ୍ଗମେଳ ଭିତରେ ଦିନ କଟାଏ । ଏଣିକି ସାଙ୍ଗସାଥିଙ୍କ ଭିତରୁ କେହି କେହି ତାକୁ ଟିକିଏ ଖାତିର କଲେ । ଯେତେହେଲେ ତ ସେ କଜର ଖଣ୍ଡେ ଠାବ କଲାଣି । ମଦନ ହସରେ ଉଡ଼ାଇ ଦେଇ କହେ, “ଆରେ, ସ୍ୟାଙ୍କୁ କହନ୍ତୁ, ଆ ବଳଦ ମତେ ବାନ୍ଧ୍ । ଆଜିଯାକେ ରାଜା କ'ଣ, ରାଜସ୍ୱ କ'ଣ ଜାଣି ନ ଥିଲି । ଏବେ ନିଜ ହାତରେ ନିଜେ ବେଡ଼ି ପିନ୍ଧିଲି । ଖାଲି ସଉଣ୍ଟି ଯୋଗୁ ସିନା; ନଇଲେ ମୁଁ କିଏ, ଘର କିଏ !”

ଦଶହରା ଅଳ୍ପଦିନ ଥାଏ । କଟେ କଟେ ଗାଁ ଭିତରେ ଢୋଲ ସ୍ୱରଟା ଜୋର ହୋଇଗଲା । ଦୁଲିପ ତେବେନ୍ତ ବୁଲିଲା । କେଳାସାହି ଉପରେ ପଡ଼ିଲା ସବୁରି ନଜର ।

ଘର ଘର ତଲାସ ହେଲା । ସ୍ମେଗ୍ଲ ଜିନିଷର କିଛି ସନ୍ଧାନ ମିଳିଲା ନାହିଁ । ଛ' ସାତ ଜଣ କେଳାଙ୍କୁ ସନ୍ଦେହରେ ଗିରଫ କରାଗଲା । ମାତ୍ର ଫଙ୍କଢରେ କିଛି ଫଳ ହେଲା ନାହିଁ । ଶେଷରେ ହଲ ହଲ କରି ହାତକଡ଼ି ପିନ୍ଧି ଚାଲାଣ ହେଲେ ।

ସଉରୀ ମଦନକୁ କହିଲା, "ଦେଖିଲୁ ତ ! ଅଲଗା ହୋଇ ଘରଝଣ୍ଡ ଥିଲୁ ବୋଲି ତ ଆମେ ଛୁଡ଼ ପାଇଲୁଁ ।"

ମଦନ କହିଲା, "ଖାଲି ମିଛ, ଖାଲି ମିଛ । ଆଉ ଜଣେ ଦ୍ୱେଷ କରି ତାଙ୍କ ମୁଣ୍ଡରେ ଅଠା ବୋଳିଛି । ମୁଁ ମକଦ୍ଦମା ଲଢ଼ି ସମସ୍ତଙ୍କୁ ମୁକୁଳେଇ ଆଣିବ ।"

ସାପୁଆମାନେ ଗିରଫ ହେବା ପଛେ ପଛେ କେଳାସାହି ଖାଲି ହୋଇଗଲା । ଘାସ ଆଠଣ୍ଟା ଉଜ ବଢ଼ିଗଲାଣି । ଆମ୍ବତୋଟା ତଳେ କୁଡ଼ିଆ ଗୁଡ଼ିକ ମାଟିରେ ମିଶିଯାଇଛି । ସଉରୀ ଆଜଯାକେ ଡକେଇଛି । ମଦନ ମକଦ୍ଦମା ଲଢ଼ି ସାରି ଫେରିନାହିଁ ।



# ପଶୁ

## ରାଜକିଶୋର ପଟ୍ଟନାୟକ

କୁକୁରଟି ବୁଝୁ ନ ବୁଝୁ ତାକୁ ପଶୁ ବୋଲି କୁହାଯାଏ । ଘରେ ସେ ଗେହ୍ଲା ହୁଏ, ଆଦର ପାଏ, ମାଡ଼ ଖାଏ, ଗାଳି ଶୁଣେ— ସବୁଥିରେ ଗୋଟିଏ ଧାଗା ଯୋଡ଼ି ଦିଆଯାଏ, ସେ ପଶୁ । ଅନେକଦିନ ହେଲା ଘରେ ରହିଲଣି । ଘରର ନୂଆ ଚାକରମାନଙ୍କଠାରୁ ପୁରୁଣା । ଘରକୁ ଆସିଥିବା କଅଁଳା ପିଲାଟାଠାରୁ ବଡ଼ ଓ ପୁରୁଣା ପିଲାଟି ଜନ୍ମ ହେଲାବେଳେ ମା' ଯେତେବେଳେ କଷ୍ଟ ପାଉଥିଲା, କୁକୁରଟି ସେହି ଦୁଃଖ ସହି ନ ପାରି ନିଜେ ମଧ୍ୟ କାନ୍ଦି କାନ୍ଦି ଘରେ ଜଣକ ପାଖରୁ ଆଉ ଜଣକ ପାଖକୁ ଧାଉଁଥିଲା ଓ ମୁହଁକୁ ଚାହିଁ, ଗୋଡ଼କୁ କାମୁଡ଼ି କହୁଥିଲା ଯେ ଘରେ ଜଣେ ଦୁଃଖ ପାଉଛି ।

ତାକୁ ପଶୁ କୁହାଯାଏ । ମଣିଷର ଦୁଃଖରେ ମଣିଷ କାନ୍ଦେ ନାହିଁ । ସେ ତାହାର ଜ୍ଞାନରେ ବୁଦ୍ଧିରେ ହୃଦ ଭିତରର କଅଁଳ ରସକୁ ଶୁଖେଇଦେଇ କହେ, ସେ ମଣିଷ । ପୋଷା କୁକୁର ଟମି ଗୋଟାଏ ମଣିଷର ଦୁଃଖରେ ଯେତେବେଳେ କାନ୍ଦି ଅସ୍ଥିର ହୋଇ ଏଠି ସେଠି ହେଉଥିଲା ତାକୁ କୁହାହେଉଥିଲା ପଶୁ ।

ବାବୁଘରର ପିଲାମାନେ ବି ବାବୁ । ସେମାନେ ପିଣ୍ଡାରେ ଠିଆ ହୋଇ ଦେଖୁଥାନ୍ତି ଗୋରୁ ଗୁହାଳରୁ ଫିଟିଲେ ଓ ଗୁହାଳକୁ ପଶିଲେ । ଗୋରୁ ଦୁଇଟିଙ୍କର ଖର ଆଖି, ପାଖକୁ ଥିବା କଦଳୀ ବୁଦାଟି ଉପରେ । ଗଛକୁ ସବୁବେଳେ ମୁହଁ ପାଏ ନାହିଁ; କିନ୍ତୁ ପାଖରେ ଥିବା ପୁଆଗୁଡ଼ିକୁ ମାଁ ଠି ନେଇ ନିଜ ପେଟ ଭିତରକୁ ଠେଲି ଦେବାପାଇଁ ସବୁବେଳେ ଚେଷ୍ଟା ।

ସେତିକି ଟମି ଜଗିଥାଏ । ଗାଈର ଟାଣୁଆ ଖୁରା, ମୁନିଆଁ ଶିଙ୍ଗ ଓ ଫଁ ଫଁକୁ ଡରେ ନାହିଁ । କାମୁଡ଼ିବାକୁ ମାଡ଼ିଯାଏ । ଭୁକି ସମସ୍ତଙ୍କୁ ଡାକ ପକାଏ— ଆସ, ଧାଇଁ ଆସ ! ଏହି ଗାଈମାନେ କଦଳୀବୁଦାଟିକୁ ନେଇ ଶେଷ କରିବାକୁ ବ୍ୟାକୁଳ ।

ବାବୁମାନେ ଚାକରକୁ ଡାକ ପକାନ୍ତି । ଟମି ଲଢ଼ୁଥାଏ ଏକା ଏକା । ନେତେବେଳେ ପଛକୁ ହଟିଆସିଲା ବେଳେ ଗାଈ ଖଣ୍ଡେ ପଜ କି ଗୋଟାଏ କଦଳୀ-ପୁଆକୁ ଦାନ୍ତରେ ଉପୁଡ଼ିନିଏ । ଚାକର ଗାଳି ଖାଏ ଓ ଟମି ଗୋଇଠା ଖାଏ ।

କେହିହେଲେ ବାବୁଙ୍କର ଗୁହାଳ ପାଖରେ ଯତ୍ନରେ ସଜାଡ଼ିଥିବା କଦଳୀବୁଦାଟିକୁ ରକ୍ଷା କରିପାରିଲେ ନାହିଁ । ଘରେ ରହି ଆଉ କ'ଣ କରିବେ !

ବୁଦ୍ଧିମାନ ଲୋକର ଇଚ୍ଛା ଯେ ସମସ୍ତେ ପଶୁ ପରି ତାହାର ସମ୍ପତ୍ତିକୁ ଜଗି ବସିବେ । ସେଥିପାଇଁ ମଉକା ଦରକାର ପଡ଼ିଲେ ଖୁସି ହୋଇ ଟଳିପଡ଼ିବେ । ତାହା ହେଲେ ସେ ଖୁସି ହୋଇ ଗୋଟିଏ ସାର୍ଟିଫିକେଟ ଦେବ— ପଶୁଟାଏ ବୋଲି ଏତକ ବୁଦ୍ଧି ଖଟେଇଲା ।

ବଣ ଜଙ୍ଗଲର ପିଲା କୁକୁର ଜାତରୁ ଏହି ଟମିଟି ଗୋଟିଏ ସହରରେ ରହି ସହରିଆ ହୋଇଯାଇଛି । ତାକୁ ମାଟିରେ ଶୋଇବାକୁ ଭଲ ଲାଗେ ନାହିଁ । ଏକୁଟିଆ ବଣବୁଦାରେ ବୁଲିବାକୁ ସୁଖ ଲାଗେ ନାହିଁ । ସେ ଖୋଜେ ପକ୍କା ଘର ଓ ପିଣ୍ଡା । ସେଠି ପୁଣି ତାକୁ ଖଣ୍ଡେ ଶେଯ ଲୋଡ଼ା ହୁଏ । ଅଖା କି ଛିଣ୍ଡା କମ୍ବଳ ନ ପାଇଲେ ଉପରେ ଶୁଖୁଥିବା ତଉଲିଆ, ଲୁଗା ଆଦି ଖଣ୍ଡେ ଯୋଗାଡ଼ କରି ସେ ବିଛଣା କରେ । ସେ ଖୋଜେ ଦି'ଜଣ ଜଣେ ମଣିଷଙ୍କ ସାଥିରେ ଯାଇ ନଈକୂଳେ, ପାର୍କରେ, ନଇଲେ କୋଠା ଉପରେ ବୁଲିବାକୁ ।

ବାବୁଘର ଝରକା ଭିତରୁ ଜଣେ ବାବୁ ପରି ରାସ୍ତାକୁ ଚାହିଁଥାଏ । ସେଠି ଲୋକେ ଯା ଆସ କରୁଛନ୍ତି । ପରିବାବିକାଳି ଗଲେ ଟମିର ମନେ ପଡ଼ିଯାଏ ବାବୁଙ୍କର ପରିବା କିଣା ହୁଏ ବୋଲି । ଦି'ଥର ଭୁକିଦେଇ ଓହ୍ଲେଇ ଆସେ ସିଡ଼ି ଉପରୁ । ପୁଣି ଧାଇଁଯାଏ, ପୁଣି ଓହ୍ଲାଏ । ଏହି ଠାରରୁ ସମସ୍ତେ ଜାଣନ୍ତି, କ'ଣ ବର୍ଜି ଯାଉଛି ଯେ ଘରେ କିଣିବାକୁ ଟମି ବିବାଦ କରୁଛି ।

ସହରିଆ ବାବୁଙ୍କ ପରି ଟମିକୁ ବି ଖାଲି ଭାତ ଦେଲେ ଅରୁଚି ହୁଏ । ସେ ଖୋଜେ ଡାଲି, ତଅଣ । ନ ପାଇଲେ ପଡ଼ିଥିବା ଲେପାତଳ ଖାଇ ସେ ତାହାର ଆଶା ମେଣ୍ଟାଏ ।

ହିଏ ମୁଣ୍ଡ କୁଣ୍ଡାଇଲାବେଳେ ଟମି ଆସି ପାଖରେ ବସି ଦେଖୁଥାଏ । ବୋଧହୁଏ ତା'ର ଇଚ୍ଛା ହୁଏ ମୁଣ୍ଡ କୁଣ୍ଡାଇବାପାଇଁ । ମଝିରେ ମଝିରେ ଗୋଟିଏ କଡ଼ା ବ୍ରୁସ୍‌ରେ ତାହାର ଲୋମକୁ ଘଷି କଅଁଳ ଓ ସଫା କରାହୁଏ । ଟମିକୁ ଉଲ୍ଲାସିଆ ଲାଗେ; ସେ ଆଖି ବନ୍ଦକରି ପଡ଼ିଯାଏ । ତାହାର ଇଚ୍ଛା ହୁଏ ଦିନ ଦିନ ଧରି ତାହାର ଦେହ ଖାଲି ବ୍ରୁସ୍‌ରେ ମଜା ହେଉଥାନ୍ତା ।

ଲୋକେ ମୁଣ୍ଡ କୁଣ୍ଡାଇଲାବେଳେ ଟମି ପ୍ରତିଦିନ ବସିରହେ । ସୁବିଧା ପାଇଲେ ଦର୍ପଣ ପାନିଆକୁ ଚାଟେ; କିଛି ସୁବିଧା ନ ହେଲେ କୁଣ୍ଡାଉଥିବା ମଣିଷଙ୍କର ଗୋଡ଼କୁ ଚାଟୁଥାଏ । ମାଡ଼ ଖାଏ ଯେ କାମବେଳେ ଟମି ଏମିତି ହଇରାଣ କରି କାମରେ କ୍ଷତି କରୁଚି । ଛୁଡ଼ିକି ଯାଇ ପାନିଆଟା ଲୋକଙ୍କ ମୁଣ୍ଡରେ ଜୋରରେ ଖେଞ୍ଚି ହୋଇଯାଏ । ଟମି ଖାଏ ଗୋଇଠା ।

ବଣୁଆ ଲୋକେ ସହରକୁ ଆସି ସହରିଆ ପାଲଟିଲା ପରି ଏହି କୁକୁରଟି ସହରିଆ ହୋଇଯାଇଛି । ଟିଣ ଦୁଧ, ଚକୋଲେଟ୍, ଜେଲି ଆଦି ତାକୁ ଭଲ ଲାଗେ ଖାଇବାକୁ । ଭଙ୍ଗା ଟିଣଦୁଧର ଟିଣରେ ଲାଗି ରହିଥିବା ଦୁଧକୁ ଚାଟି ଚାଟି ସେ ତାହାର ମୁହଁକୁ ଖଣ୍ଡିଆ କରି ରକ୍ତଦାନ ମଧ୍ୟ କରିଚ । ତାହାର ପୋଷିଲା ବାବୁମାନେ ଦାଢି ଗୁଞ୍ଚିଲାବେଳେ ଥରକୁ ଥର ଖୁରକୁ ନିଜର ମୁହଁର ରକ୍ତ ଦେଇ ମଧ୍ୟ କ୍ଲାନ୍ତ ହୁଅନ୍ତି ନାହିଁ । ଅନେକ ମମତାରେ ଖୁରଟିକୁ ପୋଛି ରଖିଦିଅନ୍ତି ।

ସକାଳୁ ଉଠି ଟମି ଚାଲିଯାଏ ଗୋଟିଏ ଝରକା ପାଖକୁ···ସିଡ଼ିଘର ଉପରେ ନିଛାଟିଆ ଜାଗାରେ ଥିବା ଝରକାଟି । ସେଠି ପ୍ରତିଦିନ ଆଠ ନଅ ଘଣ୍ଟା ସେ ବସେ । ପଦାକୁ ଚାହିଁଥାଏ, ନଇଲେ ଶୋଇଥାଏ । ଦେଖିବାରେ ତାହାର କ୍ଲାନ୍ତି ନାହିଁ । ଭଲ କରି ରାସ୍ତାର ଲୋକଙ୍କୁ ଦେଖିବାକୁ ଝରକାର ରେଲିଂ ମଝିରେ ମୁହଁଟିକୁ ଭରତି କରି ସେ ଚାହିଁଥାଏ ।

ଘରର ଚାରିଆଡ଼େ ବୁଲା କୁକୁର ଦଳଟିଏ ବୁଦା ଭିତରେ ରହିଥାନ୍ତି ଘର କରି । ଖରାତାତି ସହନ୍ତି । ବର୍ଷାରେ ଓଦା ହୁଅନ୍ତି । ଶୀତଦିନର କାକର ତାଙ୍କର ପିଠି ଉପରେ ଟୋପା ବୋହି ଆସି ପେଟ ପାଖର ଭୂଇଁକୁ ତିନ୍ତାଇଦିଏ ଠିକ୍ ଗୋଟାଏ କୁକୁରର ଛବି ତିଆରି କରି ।

ଟମିକୁ ଦୁଆରଟା ବି ଅଣ୍ଟା ଲାଗେ । ସେ ଖୋଜେ ଘରକଣରେ ରହିବାକୁ । ବର୍ଷାପାଣି ଦେଖିଲେ ତାହାର ନାକକୁ ପାଣି ଗଳେ । ସେ ଝରକା ସେ ପାଖରୁ ବସି କ'ଣ ଭାବୁଥାଏ କେଜାଣି !

କାମ ଭାରି କମ୍ । କାରଣ, ଟମି ଗୋଟିଏ ଛୋଟିଆ ପୁଞ୍ଜିପତିଙ୍କର ଟହଲିଆ । ତାଙ୍କ ଘରେ ଯେଉଁ ପୁରୁଣା ଲୁଗା, ପୁରୁଣା ଟେବୁଲ, ଚୌକି, ପୁରୁଣା ବାସନ, ଆଉ ପୁରୁଣା ଘଡ଼ି, ଜୋତା ଆଦି ଅଛି ସେତକ ଜଗିବା ଟମିର କାମ । ଏ ସବୁ ନେବାକୁ କିଏ କାହିଁକି ଆସିବ ? ତେଣୁ ଟମିର କାମ ନାହିଁ । ସେ ବସି ତାହାର ଗୋଡ଼କୁ କାମୁଡୁଥାଏ ନଇଲେ ରାସ୍ତାକୁ ଚାହିଁଥାଏ, ଅବା ଶୋଇଥାଏ ।

ବାରବୁଲାଗୁଡ଼ିକ ନିଜର ପେଟପାଟଣା କରିବାକୁ ଏ ପାଖ ସେ ପାଖ ହେଉଥାନ୍ତି । ଟମି ପରି ତାଙ୍କୁ କେହି ଯାଚି, ନିମନ୍ତ୍ରଣ କରି ଖୁଆଇବେ ନାହିଁ । ସେମାନଙ୍କୁ ଦୂର ରାସ୍ତାରେ ଦେଖିଲେ ଟମି ଗର୍ଜିଉଠେ ଘର ଭିତରେ ।

ସହରର ବାବୁ ଖାଲି ତା'ରି ପରି ଜନଙ୍କୁ ଦେଖେ ଓ ଶ୍ରଦ୍ଧା କରେ । ଏହି ବାରବୁଲା ଭିକାରିଗୁଡ଼ା ତାହାର ଶାନ୍ତି ନଷ୍ଟ କରିଦିଅନ୍ତି । ତାହାର ପୁଞ୍ଜି ଉପରେ ଆକ୍ରମଣ କରିବାକୁ ତିଆରି ।

ପୁରୁଣା କଥା ମନେ ପକାଇ ଲାଭ ନାହିଁ । କେବେ ଆମ ବାପ ଅଜା ବଣରେ ମଫସଲରେ ପଡ଼ିଥିଲେ । ନଇର କୁମ୍ଭୀର, ବୁଦାର ବାଘ, ସେମାନଙ୍କୁ ଖଣ୍ଡିଆ କରୁଥିଲ କି ଖାଇଯାଉଥିଲ । ନଇ ତାହାର ଗୋଳିଆ ପାଣିରେ ତାଙ୍କର ଗୁଳିଆ ପଲଗୁଡ଼ିକୁ ଦପଟବାରରେ ପିମ୍ପୁଡ଼ି ମନ୍ଦା ପରି ଏକାଠି ମେଞ୍ଚା ମେଞ୍ଚା କରି ତାହାର ସୁଅରେ ଠେଲି ନେଉଥିଲ ଏଠୁ ସେଠିକି । କେବେ ସହରିଆ ସଭ୍ୟ ଲୋକେ ବନ୍ଧୁକ ଧରି, ପୋଲିସ ଧରି ଧାଇଁ ଧାଇଁ ଆସୁଥିଲେ ତାଙ୍କୁ ଲୁଟିନେବାକୁ—ତାଙ୍କର କ୍ଷୀଣ-ସ୍ୱାସ୍ଥ୍ୟ ଯୁବତୀମାନଙ୍କୁ ଅବା ଅତି ସ୍ୱେଚ୍ଛ ଧନ ଦୌଲତକୁ । ସେକଥା ମନେ ପକାଇ ଲାଭ କ'ଣ ?

ଟମିର ବି ସେଇ ମତ, କେବେ ତାହାର ବାପ ଗୋସାପେ ବଣଭିତରେ ବାଘ ଭାଲୁଆଙ୍କ ମେଳରେ ଅସହାୟ ହୋଇ ରହିଥିଲେ, ପାଇଲେ ଖାଉଥିଲେ । ଘଣ୍ଟା ତ ନ ଥିଲା; ବେଳ ଜାଣି କିଏ ଖୁଆଉଥିଲା କାହାକୁ ? ଭବିଷ୍ୟତ ନ ଥିଲା ତ; ଅଣ୍ଟସ୍ଥିରେ କି ପ୍ରୟୋଜନ ? ଆଉ କ'ଣ ଅବା ଅଣ୍ଟସ୍ଥ କରିବେ ?

ଟମି ଆସି କୋଠାଘରେ ରହିଲାଣି । ସେ ଜାଣେ ବୁଲିବା ଜାଗା କୋଠା ଉପରେ । ସେଠି ଭଲ ପବନ ଦିଏ । ଟାଣ ପବନରେ ଟାଣ ହୋଇ ସେ ପବନକୁ ଶୁଙ୍ଘେ— ପିଇଯିବା ପାଇଁ । ମାଟି ଉପରେ ପାଇଖାନା ନ କରି ସେହି କୋଠାଟିର ବଡ଼ ଚଟାଣରେ ଗୋଟିଏ କଣକୁ ସେ ତାହାର ଲଣ୍ଡିଗଦା କରିଛି । ବେଶୀ ଅସନା ହେଲେ ନନେ ବାବୁ ସେଗୁଡ଼ିକ ସଫା କରୁଛନ୍ତି । କି ଦରକାର ଅଛି ସେ ଦୁଃଖ କାହାଣୀ ଶୁଣିବା ?

ବାବୁମାନେ ଶୁଣୁନାହାନ୍ତି ସେ କେବେ ବିଦେଶୀ ଶାସନରେ ସୁକର ଥିଲେ । ଏବେ ଦେଶ ସ୍ୱାଧୀନ ହେବା ପରେ ଆଣି ବୁଜା ବଢ଼ି ବୁଲିଛନ୍ତି । ଶହେ ଟଙ୍କା ପାଇବା ଲୋକ ଦଶ ପ୍ରାଣୀଙ୍କୁ କଷାଇ, ଷଣ୍ଢପରି ମୋଟା କରିସାରି ବି ହାତୀଶାଳ ପରି ଘରଟିଏ କରିପାରୁଛି । ଛାଡ଼... ପୁରୁଣା କଥା ।

ତଥାପି ଟମି ପାଏ ଗୋଟିଏ ସାର୍ଟିଫିକେଟ୍— 'ସେ ପଶୁ' । ସେଥିରେ କ'ଣ ଯାଏ ଆସେ ? ଭଲ ଖାଇବାକୁ, ପିନ୍ଧିବାକୁ, ସହିବାକୁ ମିଳୁଛି । ହେଲେ ଏବେ ଏଠିକାର କି ଦଲ୍ଲୀ ଆଲହାବାଦର ହାକିମମାନେ କହୁଛନ୍ତି, 'ଏମାନେ ପଶୁ' । ସେମାନଙ୍କର ତ କିଛି କ୍ଷତି ହେଉନାହିଁ । ଟମିର କିଆଁ ଦୁଃଖ ହେବ ! ସେ ବସିକରି ହାଇମାରେ ଓ ଶୋଇପଡ଼େ ଆରାମରେ । ଏହି ଆନନ୍ଦ କ'ଣ ବଣ-ଜଙ୍ଗଲର ସ୍ୱାଧୀନତାରେ ମିଳିବ ?

କୋଠାଘର ଭିତରେ ରହି ଟମି ସେହି ବାରବୁଲାଗୁଡ଼ିକୁ କେତେଥର ଅଟ୍ଟା କରିଛି; କେତେ ଅନୁକମ୍ପା ଦେଖାଇଛି । ଟମିର ଯୌବନ ଆସିଲାଣି; କୁକୁରର

ସୌନ୍ଦର୍ଯ୍ୟ ନେଇ ସେ ଠିଆ ହୁଏ ଝରକା ପାଖରେ । କଅଁଳ ଘନ ଲୋମ— ଯୌବନର ରଙ୍ଗବୋଳା ମୁହଁ ।

କୁକୁରଗୁଡ଼ିକ ଗଳ୍ପ ଅଇଲବେଳେ ଠିଆ ହୋଇଯାଆନ୍ତି । ତାଙ୍କର ନାକପୁଡ଼ା ଫୁଲିଉଠେ । ମଣିଷଙ୍କ ପରି ପଶୁ ଜଗତରେ ମଧ୍ୟ ଦେହ ଦେହକୁ ଖୋଜିଲାବେଳେ ଧନ ଦଉଲତ ଅତି ତୁଚ୍ଛ ପରି ଜଣାଯାଏ ।

ହେଇ, ଜଗିଥାଅ ଟମିକୁ ଏହି ଦୁଇମାସ— ବୁଲା କୁକୁରଙ୍କ ସାଙ୍ଗରେ ମିଶି ଖରାପ ହୋଇଯିବ । ଏହି ବାରବୁଲାଙ୍କର ଉତ୍ପାତ ଗୁରିଆଡ଼େ । ସହର ବଜାରରେ, ସିନେମା ଥିଏଟରରେ, ବ୍ୟବସାୟ କ୍ଷେତ୍ରରେ ସବୁ ପ୍ରକାରର ସ୍ତରରେ ଏହି ବାରବୁଲାଙ୍କର ଉତ୍ପାତ ।

ବାହାରେ ବାରବୁଲାଙ୍କ କଲରବ ଓ କାକୁତି, 'ଆ, ପଦାକୁ ଆ । ଏଠି ପବନ ଫୁରୁଫୁରିଆ ହୋଇ ବହୁଚି । କଅଁଳ ଖରା ଖୁବ ଭଲ ଲାଗୁଛି । ଉଡ଼ିଆସୁ ଲଟାରେ ପ୍ରଜାପତି ଉଡ଼ୁଚନ୍ତି । ଗୁମ୍ଫା ଗାଢ଼ ଅନ୍ଧକାରକୁ ଠେଲି ଠେଲି ଉଡ଼ୁଚି ବଣବୁଦାରୁ ମଧ୍ୟ । ଏଠି ରହିବାରେ ଆନନ୍ଦ ।' ବାରବୁଲାଙ୍କର ସଂସାର ଲୋପପାଏ ନାହିଁ । ଯେତେ ଧନ ସମ୍ପତ୍ତି ସଂସାରରେ ବଢ଼ିଲେ ବି ବାରବୁଲା ସରନ୍ତି ନାହିଁ ।

ଟମିର ଅତି ନିଭୃତରେ ପୁଣି ପ୍ରକୃତି ଜାଗିଉଠେ । ସେ ଉଦ୍ଧତ ହୁଏ । ବିକଳ ହୋଇପଡ଼େ କୋଠାଘରର ଶୃଙ୍ଖଳାକୁ ଭାଙ୍ଗି ପୁଣି ଡେଇଁପଡ଼ିବାକୁ ବୁଦା ଭିତରକୁ ।

ଏଠି ସଭ୍ୟତାର ପୋଷାକ 'ଖୋଳ ବୋହିଗଲା ନଈକୁ ବନ୍ଧାଇ ଦେଇଥିବା ସ୍ୱାବଲମ୍ବନର ବନ୍ଧୁଲପରି ଶକ୍ତ କାନ୍ଥି ବାରେ ଲାଗିଚି । ପ୍ରକୃତି କୋଳରେ ଏହି ଜୀବଟି ସେମିତି ମଣିଷଙ୍କ ଆଶ୍ରୟକୁ ଏତେ ଚହଟିଯାଇଚି ଯେ ଛାଡ଼ିପାରୁ ନାହିଁ । ଲୋକ ଯେମିତି ଘୁଙ୍ଗର, ବ୍ୟାଙ୍କ-ପୁଞ୍ଜି ର ଗୁଇ, କି ସ୍ତ୍ରୀ-ଧନର ନିର୍ଭରରେ ରହି ଚଳିବା ଶିଖିଗଲେ ସେ ସବୁ ଛାଡ଼ିପାରେ ନାହିଁ । ଜଣା ବୋଲାଉଥିବା ଡାକ୍ତର, ଇଞ୍ଜିନିୟର, କିରାଣୀ, ଓକିଲ ଥରେ ଗୋଟିକୁ ନିର୍ଭର କରିବା ଶିଖିଗଲେ ଯେତେ ମାଡ଼, ଗାଳି, ଶୋଇଠା ଖାଇଲେ ବି ଆଉ କି ଛାଡ଼ିପାରନ୍ତି !

ତଥାପି ଟମି ତା'ର ବନ୍ଧନକୁ, ଶାସନକୁ ଗୋଇଠା ମାରି ସେହି କୁକୁର-ଦଳରେ ମିଶିଯାଏ । ଏହି ଅବାଧତା ପାଇଁ ମାଡ଼ ଖାଏ । କିନ୍ତୁ ବନ୍ଧନକୁ ଠେଲି-ଦେଇ ଯିବାକୁ ଅମଙ୍ଗ ହୋଇ ସେହି କୋଠାଘରର ଶିକୁଳିରେ ବାନ୍ଧି ହୋଇ ରହେ । ବୋଧହୁଏ ଏହି ବନ୍ଧନରେ ଆନନ୍ଦ ଅଛି ।

ଟମିର ଛୁଆ ହବ— କେଡ଼େ ଅସନା, ଅଜାତିଆଗୁଡ଼ାଏ ହେବେ । ଟମିଟା ଅବାଗିଆ ହଗିବ— ପଶୁ ଜାତି କ'ଣ ବୁଝେ ?

ମଣିଷ ଛୁଆ କଉବା ଟମି ଦେଖିଥିଲା । କେତେ ଦେବାଯନ୍ତ୍ର । ସେ ଯେମିତି ଧାଁ ଦୌଡ଼ କରୁଥାଏ । ଯାହା ମିଳେ ଗିଳିଦିଏ । ପିଲାଗୁଡ଼ାଙ୍କର ଅନେକ ଦିନ ଆଖି ଫିଟିବ ନାହିଁ । ତାକୁ ଖାଇ ଶୋଇବେ । ତାହାର ଇଚ୍ଛା ହୁଏ ଦିନଯାକ ଖାଇବାପାଇଁ ।

ଗ୍ରେଟି ଛୁଆ । ନିଜର ଅପେଷାଣିଆ କୋଳରେ ସେମାନଙ୍କୁ ସେ ସ୍ଥାନ ଦେଇଚି । ଉଚ୍ଚ ଦେଢ଼ିରାଂ ଘରଟିର ଉପର ବରଗାରେ ଲଇ ଢେଙ୍ଗଲେଣି । ଖଣ୍ଡେ ଖଣ୍ଡେ ଚୂନ ଝଡ଼େ । ତାହାର କିନ୍ତୁ ଭୟ ନାହିଁ ଏହି ଉପେକ୍ଷିତ ହୋଇ ପଡ଼ିଥିବା ଘରଟିକୁ । ଡର ତାହାର ମଣିଷଙ୍କୁ । ତାହାର ଦୁର୍ବଳ ପଞ୍ଜରାର ଯୋଡ଼ଣୀରେ ସେ ନିଜେ କୋଳତଳେ ଗ୍ରେଟି ଅନାଥ ଶିଶୁଙ୍କୁ ଭଚ୍ଛାପତର ଆକ୍ରମଣରୁ ରକ୍ଷା କରିପାରିବ । କିନ୍ତୁ ମଣିଷ ?

ଖାଇଲା ପରେ ସବୁଦିନ ପରି ତାକୁ ଡକାଯାଏ—ଟମି ! ଭୋକ ଚମକି-ଯାଏ ପେଟ ଭିତରେ । ଛୁଆଗୁଡ଼ିକ ଟିକିଏ ହଲଚଲ ହୋଇଯାନ୍ତି । ତାଙ୍କୁ ଥରେ ଗୁଟିଦେଇ ସେ ପୁଣି ଶୋଇରହେ । ପିଲାମାନେ ନିଜର ଭୋକଠାରୁ ବଡ଼ ।

ତାହାର ସେହି କଳା ମଚମଚ ଛୁଆଙ୍କୁ ଦେଖିବାକୁ କେହି ଝରକା ପାଖେ ଆସିଲେ ଟମିର ଦୁର୍ବଳ ଭୟାର୍ତ୍ତ ଆଖି ହିଂସାରେ ଜକଜକ ହୁଏ । ଧଳା ଦାନ୍ତଗୁଡ଼ାକ ତା'ର ଦିଶିଯାଏ କଙ୍କାଳର ଭୟ ଦେଖାଇ । ଉପର ଓଠ ନାକଯାକେ ଉଠିଯାଏ । 'ନେଇଯିବେ·· ନେଇଯିବେ ସମସ୍ତେ' ।

ଦିନଯାକ ଲୋକେ ଖାଉଥାନ୍ତି; ଥାଳି ଧୂଆ ଚୁଲିଥାଏ । ସେ ପ୍ରଥମେ ଦି'ଟା ଗ୍ରାସଟା ଖାଉଥିଲା । ସେ ଛୁଆଙ୍କୁ ଗୁଣ୍ଡି ସେହି ଆଶା ମେଣ୍ଟାଏ । ଏଣେ ଛୁଆଯାକ ଆନନ୍ଦରେ ଆହୁରି ଜୋରରେ ଦୁଧ ଖାଇବାରେ ଲାଗିଥାନ୍ତି । ଦୁଧ ସରି-ଆସିଥିଲେ ତା'ର ପଞ୍ଜରାର ଚିରଗୁଡ଼ିକୁ ଖଣ୍ଡିଆ କରିଦିଅନ୍ତି ।

ତଥାପି ତାଙ୍କୁ ସେ ଆଉ ଟିକିଏ ଜାକି ଧରେ କୋଳରେ । ସେତିକି ତାହାର ସମ୍ବଳ— କାରଣ ସେ ପଶୁ ।

ଅଭ୍ୟାସ କରି ଟମି ତାହାର କୁକୁରର କୃତଜ୍ଞତା ଦିନକୁ ଅନ୍ତତଃ ଥରେ ଦେଖାଉଥିଲା ଘରର ମାଲିକଙ୍କ ପାଖରେ । ସେ କାମରୁ ଫେରିଲେ ଟମି ତାଙ୍କୁ ସଙ୍ଖୋଳିବାକୁ ଧାଇଁଆସେ । ଘରେ ପିଲାମାନେ ବା ସ୍ତ୍ରୀ କେବେ କେମିତି ଥିଲେ ଥାଆନ୍ତି । କିନ୍ତୁ ଏହି କାମଟିରେ ଟମି କେବେ ହେଳା କରେ ନାହିଁ । ବାବୁ ଆସିଲା-ବେଳେ ସେ ଘରେ ନ ଥିଲେ ଦୂରରୁ କେବେ କେମିତି ଧାଇଁଥାଏ ଜୋରରେ— ବାବୁଙ୍କ ଆଗରୁ ଆସି ପହଞ୍ଚିବାପାଇଁ ।

ଛୁଆ ହେବାର ଦୁଇଦିନ ହୋଇଗଲାଣି । ଟମି ଆସି ଦେଖା କରିନାହିଁ । ରାତିରେ ସେ ଖାଇ ହାତ ଧୋଉଥିବାବେଳେ ଅନ୍ଧାରରେ ଟମି ତାହାର ଛୁଆ ଗୁଡ଼ିକୁ ଲୁଚେଇଦେଇ ଧାଇଁଆସିଲା । କୁଇଁ କୁଇଁ ହୋଇ ଦୁଆରେ ଦି'ହାତ ଖୋଲି ଛିଡ଼ାଗଲା । ସେଥି ତାହାର କୁଶଳ, କୃତଜ୍ଞତା, ଦୁଇଦିନ ନ ଆସିବାର କ୍ଷମା ପ୍ରାର୍ଥନା ଓ ଦେଖିବାର ଆନନ୍ଦ ।

ନ ଖାଇ ଫେରି ଧାଇଁଗଲା ଛୁଆଙ୍କ ପାଖକୁ । ପୁଣି ଆସିଲା ଦି'ଟା ଖାଇବାପାଇଁ । ବଣର ଆତ୍ମନିର୍ଭରଶୀଳ ପ୍ରାଣୀଟି ଆଜି ସହରର କୋଠାରେ ଭିକାରି ।

ସେଇ ଖଣ୍ଡିଆ ଘରର ଦୁଆରମୁହଁରେ ବସିଥାଏ ଟମି । ଭିତରେ ଛୁଆ-ଗୁଡ଼ାକ କେଁ କେଁ ହେଉଥାନ୍ତି । ସମସ୍ତେ ମନେକରନ୍ତି ସେ ଟମିକୁ ଦୁଧ ଦବାକୁ ପଡ଼ିବ ବୋଲି ଲୁଚୁଛି । ଆଉ ତେଣେ କେହି ଗଲେ କାମୁଡ଼ିବାକୁ ଧାଇଁଆସୁଛି ।

ମାଡ଼ ଡର ଦେଖାଇ ତାକୁ ଭିତରେ ପୁରାଇ କବାଟ ବନ୍ଦ କରିଦିଅନ୍ତି । ଆଉ, ସେ ଭିତରେ ଛୁଆମାନେ ତାକୁ ଝୁଣି ଝୁଣି ଖାଉଥାନ୍ତି । ଏବେ ପଳାଇବ କାହିଁକି ?

ହାଡ଼ ପଞ୍ଜରରେ ଯେତିକ କ୍ଷୀର ସମ୍ଭବ, ଖାଇସାରିଲେ ଛୁଆଯାକ ତାହାର ଲାଞ୍ଜ, କାନ, ଗୋଡ଼କୁ କାମୁଡ଼ୁଥାନ୍ତି । ସେ ପ୍ରତିବାଦ କରେ ନାହିଁ । ଏହି ସଭ୍ୟ ସହରର ଜାଣିବା ଶୁଣିବା ମା'ମାନେ ଛୁଆଙ୍କର ଏତିକ ସେବା କରୁଥିଲେ କସ୍ତୁରବା ପାଣ୍ଠିରେ ପ୍ରଚୁର କାହିଁକି ଖୁଲନ୍ତା ସେମାନଙ୍କ ପାଇଁ !

ଗୋଟିଏ ଛୁଆ ମରିଗଲା—

ମରିବା ଆଗରୁ ମା'ପାଖରେ ଧାଇଁ ନ ପାରି ଖାଲି ଠା'କରେ ବସି କେଁ କେଁ ହେଉଥାଏ । ଟମି ଯାଇ ଥରେ ଚାଟି ଦିଏ— ଭୁଲି ଆସେ । ମନେକରେ ସେଇ ଛୁଆଟିର ମା'ପାଖରେ ଧାଇଁବାକୁ ଇଚ୍ଛା ନାହିଁ । ମା'କୁ ଡାକି ଡାକି ମରିଗଲା । ବିଚରା କୋଠ ଘରର ଅଇଁଠା ଚାଟି ଶିଖିଲା ନାହିଁ ।

ଟମି ତାକୁ ପାଟିରେ କାମୁଡ଼ି ଏଠି ସେଠି ହୁଏ ଆଉ ଚାଟେ । ଲୋକେ ପାଖକୁ ଗଲେ ଗାଁ ଗାଁ ହୁଏ । ଦେଖାଗଲା ସେ ଛୁଆକୁ ବଞ୍ଚାଇବା ବାହାନାରେ ଚାଟୁ ଚାଟୁ ସେ ଚିରପଣେ ଖାଇ ଦେଇ ସାରିଲାଣି ।

ଆରେ, ଦେଖ ଦେଖ ! ଟମି ଏଥର ପାଗଳ ହୋଇଗଲା ବୋଧହୁଏ । ନିଜର ଛୁଆକୁ କ'ଣ ପଶୁମାନେ ଖାଆନ୍ତି ! ଆଉଗୁଡ଼ାକୁ ବି ଖାଇଯିବ—ମଣିଷକୁ ହୁଏତ ଛକିବ ।

ଲମ୍ବା ଠେଙ୍ଗାର ସାହାଯ୍ୟରେ ସେ ମଲା ଛୁଆଟି ତାହାଠାରୁ ବଡ଼ା ହୋଇ ପାଚେରି ଡିଆଁଇ ଚାଲିଗଲା । ଝମି ଦେଖିଲା, ଉଚା ପାଚେରି ତାହାର ପେଟ ଭିତରର ଛୁଆକୁ ନେଇଗଲା । କେବଳ ଠିଆ ହୋଇ ପାଚେରିକୁ ଶୁଙ୍ଘେ । ଆଉ ଯୋଉଁଏ ମଲେ । ସେମିତି ପାଚେରି ଆରପାଖେ ଲୁଚିଗଲେ ତାହାର ଆଖିର ଆଗେ ଆଗେ ।

ଗୋଟିଏ ଛୁଆ ରହିଲା । ଝମି ତାକୁ ଗୁଆଇ ବଳୁଆ କଲା । ଏଇଟି ତାହାର ପାଖେ ପାଖେ ରହିବ । କୁକୁର ଜଗତକୁ ଏତିକି ତାହାର ଦାନ ।

ସୁନେଲି ଖରା, ରୂପେଲି ଜହ୍ନ, ଫୁଲର ବାସନା, ପ୍ରଜାପତିର ରଙ୍ଗ ଭିତରେ ସେ ଯାହା ପାଇଥିଲା ସେଗୁଡ଼ିକ ଏମିତିରେ ଚାଲିଗଲେ । ଆସିଥିଲେ, ତାହାର କାନ୍ଦଣା ଭିତରେ ପୁଣି ଫେରିଗଲେ, ତାକୁ କନାଇ ।

ତଥାପି ବାବୁମାନେ କହନ୍ତି, ସେ ପଶୁ···ସେ ସ୍ନେହକାନ୍ଦ କ'ଣ ଜାଣେ ନାହିଁ ।

ତାହାର କୌତୁକିଆ ଗୋଟିଆ ଛୁଆଟି ପଢ଼ଣାଘର ନେଇଗଲେ ପାଳିବେ ବୋଲି । ନେଲାବେଳେ ଝମିକୁ ଜଣା ନାହିଁ । ଛୁଆକୁ ଚାରିଆଡ଼େ ଖୋଜିଲା । ସମସ୍ତଙ୍କ ମୁହଁକୁ ଚାହେଁ; କିଏ ଚୋରାଇଚି ଜାଣିପାରେ ନାହିଁ । ଏଠି ସେଠି କୁଇଁ କୁଇଁ ହୋଇ କହେ ଛୁଆଟିକୁ ଫେରାଇବାପାଇଁ ।

ପାଚେରିର ଚୂନକୁ ଶୁଙ୍ଘି ସେମିତି କୁଇଁ କୁଇଁ ହୁଏ । ଏଥି ପାଚେରି ତାହାର ଶତ୍ରୁ । ସେଥି କାନ୍ଥକୁ ନିଜର ଦୁର୍ବଳ ଗୋଡ ନଖରେ ଚାମ୍ପେ ।

ରାତ୍ରୀରେ ଗହଳି । ଗୋଟେ ଛୁଆଟି ପାଖ ପଢ଼ଣାଘରେ ପିଲାଙ୍କ ସଙ୍ଗରେ ଖେଳୁଥାଏ । କେତେବେଳେ ମା'କୁ ଡାକିବା ପାଇଁ ତାହାର ଦୁର୍ବଳ ସ୍ୱର ବାଢ଼େ, ସେଡିକି ସଂସାରର ଗୋଳମାଳକୁ ବୁଡ଼େଇ ଉଠିପାରେ ନାହିଁ ।

ରାତି ଅଧିକ ହୋଇଗଲା । ରାସ୍ତାରେ ଗହଳି ଭାଙ୍ଗିଗଲା । ପଢ଼ଣାଘରେ ଶୋଇଗଲେଣି । ଝମିର ନିଦ ଭାଙ୍ଗିଗଲା । ସନ୍ଦେହ ତୁଟିଗଲା—ଛୁଆ କାନ୍ଦୁଛି ଠିକ୍ ସେଇ ପାଚେରି ଆରପାଖେ ।

ଘରଯାକ ଧାଁ ଦଉଡ଼ କଲା । ପାଟି କରି, ଭୁକି, ବୋବେଇ ସମସ୍ତଙ୍କୁ ଉଠାଇଲା । ପାଚେରି ଯାଏଁ ଧାଇଁଯାଏ ଓ ଲୋକଙ୍କ ମୁହଁକୁ ଚନାଏ । 'ଛୁଆଟି ସେ ପାଖରେ ଅଛି, ଦିଅ ।'

ନିଦ ଭଙ୍ଗାଇଥିବାରୁ ମାଡ଼ ଖାଇଲା । ଛୁଆଟିର କାନ୍ଦଣା ବନ୍ଦ ହୋଇଯାଏ, ପୁଣି ହୁଏ । ଝମି ନ ଶୋଇ ବାହୁନେ । ଘରେ ଶୁଭେ, 'ଅଜି ଏଇଟା ଆଉ ଶୁଆଇ-ଦବ ନାହିଁ । ଗୋଟାଏ ଛୁଆକୁ ଖାଇଗଲା—ଆଜି ଦେଖ ପୁଣି ହୋହାର !'

ପାଚେଶ୍ବାର ଘୃଣଆଡ଼େ ଝରକା । ଘରର ସବୁ କବାଟ ବନ୍ଦ । ସେଥିରେ ଝମି ବନ୍ଦୀ । ପାଚେଶ୍ବା ଆରପାଖେ ଠିକ୍ ତାହାର ଛୁଆର କାନ୍ଦଣା—ହଁ ତାହାର ଛୁଆ ତ !

ସେହି ପାଚେଶ୍ବରେ ଗୋଟିଏ ବର୍ଷା ପାଣି ଗଡ଼ିବାପାଇଁ କଣା ଥାଏ । ସେଥିରେ ମୁହଁ ପୂରେଇ ଝମି ଅନେକ ସମୟ ରହେ । ଛୁଆ କାନ୍ଦିଲେ ବୋବାଏ, କିନ୍ତୁ ସେହି କଣା ଭିତରକୁ ପଶିପାରେ ନାହିଁ ।

ଝଶୂନ ରାତି । ସବୁଆଡ଼େ ଶୋଇଚନ୍ତି—ଝମିର ମାଉନ୍ଦ ଘର ଓ ଛୁଆ ରହିଥିବା ପଡ଼ଶାଘରର ସମସ୍ତେ । ଛୁଆଟି ବେଳେ ବେଳେ ବୋବାଇଉଠେ । ଗହନ ରାତିର ଥଣ୍ଡା ପବନ ସେହି ସ୍ୱରକୁ ବୋହିଆଣେ ଝମିର କାନ ପାଖକୁ । ଛୁଆଟିକୁ ଶୀତ କରୁଚ, ମା' କୋଳର ଆଶ୍ରୟ ନାହିଁ । ଝମିକୁ ଶୀତ କରୁଛି । ଛୁଆଟି କେଇଦିନ ହେଲାଣି ତାହାର କୋଳକୁ ଉଷୁମ କରିଥିଲା--ନାହିଁ ।

ଗୋଟିଏ ଝିଅାଳରେ ସେହି ପାଚେଶ୍ବା କଣା ଭିତରେ ଝମି ଗଳିଯାଇଚ ସେପାଖରୁ ତାହାର ଛୁଆଟିକୁ ଉଦ୍ଧାର କରିବ ବୋଲି । ପଶିଯାଇ ପୂରା ସେ-ପାଖକୁ ଯାଇପାରିଲା ନାହିଁ--ଫେରିପାରିଲା ନାହିଁ । ଅର୍ଦ୍ଧେଦୋଇଥ‍ା ନଳାରେ ତାହାର ଦୁର୍ବଳ ପଞ୍ଜରା ଚିପି ହୋଇ ରହିଗଲା ।

ବାସ୍ତୁଳୀର ଯନ୍ତ୍ରା । ଏହାର ଭିତରେ ତାହାର ପୂର୍ବପୁରୁଷମାନେ ବଣରେ ଜନ୍ତୁଙ୍କ ସାଙ୍ଗରେ ଲଢ଼ି ଅସହାୟ ଶିଶୁମାନଙ୍କ ପାଇଁ କେତେଥର ମରିଥିଲେ । ମା' ବଞ୍ଚିଥିବାଯାଏ ଛୁଆମାନଙ୍କର କ୍ଷତ ହୋଇ ନ ଥିଲା । ସେହି ଯନ୍ତ୍ରାରେ ଚିପି ହୋଇ ପଡ଼ିଥିଲାବେଳେ ଛୁଆର କାନ୍ଦଣା ବାଜେ ଅତି ଆଗରେ । କାନ ଦ'ଟା ଘଷିହୋଇ ଖଣ୍ଡିଆ ହୋଇଯାଇଛି ।

ତାହାର ଟିକି ହୃଦୟଟି ପିଲାଙ୍କ ପାଇଁ ବୋଧହୁଏ ଆକାର ପ୍ରକାରରେ ବଢ଼ିଯାଇଥିଲା । ସେଇଟି ଚିପିହୋଇ ହାଡ଼ ତଳେ ପୁଣି ସଙ୍କୁଚିତ ହୋଇ-ଯାଇଚ ।

ସକାଳ ବେଳକୁ ଜଣାଗଲା । ତାହାର ମେଲା ଆଖିକୁ ଦେଖି ସମସ୍ତେ ମନେ କଲେ ସେ ଜୀଇଁଚ । ତାକୁ ମୁକୁଳେଇବା ପାଇଁ ପାଚେଶ୍ବାର ଇଟା ଭାଙ୍ଗି ବାହାର କଲାବେଳେ ଖଣ୍ଡେ ଭୁସୁଡ଼ା ପଡ଼ିଲା ଲୁଡ଼ିଟିଏ ହୋଇ ତାହାର ମଲା ଦେହ ଉପରେ ।

ଏହି ଇଟା ଚୂନର ପାଚେଶ୍ବା । ତାକୁ ବାଧା ଦେଉଥିଲା ଯେତେବେଳେ ଦୁଇ କୁକୁରମାନେ ଯୌବନର ଗୀତ ଗାଇ ତାହାର ଚେତନା ଭାଙ୍ଗିଥିଲେ ।

ସେଇ ପୁଣି ତା'ର ଛୁଆକୁ ନେଇଥିଲା । ସେହି ପାଚେରୀ ଆର ପାଖେ ଛୁଆ କାନ୍ଦୁଥିଲାବେଳେ ତାହାର ଦୁର୍ବଳ ସ୍ୱରକୁ ପାଚେରୀ ବାଧା ଦେଉଥିଲା ମା' ପାଖରେ ନ ପହଞ୍ଚିବା ପାଇଁ । ସେହି ପାଚେରୀ ପୁଣି ଗୋଟିଏ ମା'କୁ ନିଜ ଛୁଆ ଦେଖିବାକୁ ଗଲାବେଳେ ବାଧାଦେଇ ଏକାବେଳକେ ନେଇଗଲା ଆର ପୁରକୁ ।

'ଆରେ, ଦେଖ, ଚମିଡ଼ା ମରିଗଲା କେମିତି ! ଆଃ, ପଶୁ ଜାତି ତ—କ'ଣ ବୁଝିବେ ?'

ମଣିଷ ତାହାର ଛୋଟିଆ ଛୁଆଟିକୁ ଶିଖାଇଦେଲେ—ସେମାନେ ବଳୁଆ ବୋଲି । ତାଙ୍କୁ ତାହାର ମରିବାର ରାସ୍ତା ଦେଖାଇଦେଲେ—ସେମାନେ ବୁଦ୍ଧିଆ ବୋଲି । ମଲା ପରେ ତା'କୁ ମୁକୁଳେଇବାର ଚେଷ୍ଟା କଲେ—ସେମାନେ ହୃଦୟବାନ୍ ବୋଲି ।

ଧର୍ମ ଶାସ୍ତ୍ରକାର ଠିକ୍ ଏମିତି ମଣିଷକୁ ପଶୁପରି ଗଢ଼ିଦିଏ । ତା'ପରେ ତାହାକୁ ମାରି ସାରି ତାହାର ଶ୍ରାଦ୍ଧରେ ସାହାଯ୍ୟ କରି ନିଜର ଧର୍ମ ଅର୍ଜ୍ଜନ କରେ ଓ ବଡ଼େଇ କହି ବୁଲେ ।



# ଯକ୍ଷ

**ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଳ**

ସଞ୍ଜ ବାଜିଲେ ବୁଢ଼ୀମା କୋଳ ପାଖକୁ ଆଉଜି ମାଳା, ନୂଟୁ, ଗଦା, ପଂକ ଘରର ଯେତେ ପିଲା ଅଳି କରନ୍ତି—ବୁଢ଼ୀମା ଗୋଟେ ଗପ। ନା, ନା, ସେଇ ରଜାପୁଅ ମନ୍ତ୍ରୀପୁଅ କାହାଣୀ ନୁହ, କି ସେଇ ପୁରୁଣା ବାଘ ବାଘୁଣୀ କଥା ନୁହ—

ଦିନସାରା ଖେଳ ବୁଲି ମୁହଁ ଅଂଧାର ହେଲେ ଯାଇ ବାଡ଼ିରୁ ନାଚ ନାଚ ଦଉଡ଼ ଦଉଡ଼ ପିଲେ ଘରକୁ ଫେରନ୍ତି। ସେତେବେଳେ ହୁଏତ ବୋଉ ତୁଳସୀ ଚଉରା ମୂଳରେ ଦୁଆର ବଂଧରେ ସନ୍ଧ୍ୟାଦୀପ ଦେଇ ପ୍ରଣାମ କରି ରୋଷେଇ ବାସଲାଗି ହାଣ୍ଡିଶାଳ ଆଡ଼କୁ ଯାଆନ୍ତି ଚାଲି। ମନ୍ଦିରରେ ଆରତିର ଶଂଖ ଘଣ୍ଟା କାଂସର ଶୁଭେ ଉଠେ। ଶିଆଳ ଗୁଡ଼ା ହୁକ୍କା—ହୁକ୍କା—ହୁକ୍କା ହୋ ହୁକ୍କା ହୋ ହୁକ୍କା ହୋ ବୋବେଇ ବୋବେଇ କେତେବେଳେ ଥକି ଚୁପ୍ ହୋଇଯାନ୍ତି। ସେତେବେଳକୁ ଭିତର ପଟ ଚଉତା ପିଣ୍ଡା ଉପରେ ସପଟାଏ ପାରିଦେଇ ଛନ ଘୁରି ଜଣ ଝିଅ ପୁଅ ବୁଢ଼ୀମା ଦେହକୁ କି କାନ୍ଧକୁ ଆଉଜି ବୁଢ଼ୀମା ଆଗେ ଅଳି କରନ୍ତି—ଗୋଟେ ଗପ। ବୁଢ଼ୀ ମା-ଆ, ଗୋଟେ ଭଲ ଗପ। ସେଇ ସଦା ଦିନିଆ ରଜାପୁଅ—ମନ୍ତ୍ରୀପୁଅ ଗପ ନୁହେ, କି ସାତ ସମୁଦ୍ର ପାରି ସାଧବ ବୋହୂର କାହାଣୀ ନୁହେ କି ବାଘ ଭାଲୁ କଥା ନୁହେ। ତୁ ଗୋଟେ ସତ ସତିକିଆ ଗପ କହ—ଯିମିତି, ମରହଟ୍ଟା ଅମଳରେ ବର୍ଗୀମାନେ ଘୋଡ଼ା ଚଢ଼ି ଆଇଲେ ତୁ କିମିତି ବଣ ଜଙ୍ଗଲରେ ଗହଣା ବୁଜୁଲା ଅଣ୍ଟାରେ ଖୋସି ଲୁଚିଥିଲୁ। ଆମ ବୁଢ଼ାବା' କିମିତି ଜାହାଜରେ ଚଢ଼ି କଳାପାଣି ପାରି ହୋଇ କଲିକତା ଯାଉଥିଲେ—ଏମିତି ସବୁ ଗପ ସତ ସତିକିଆ ଗପ କହ।

"ଆରେ ରୋଜ ରୋଜ ତୁମ ଲାଗି ମୁଁ ନୂଆ ନୂଆ ଗପ କୁଆଡ଼ୁ କେତେ ଆଣିବ? ନା, ମୋତେ ଏତେ ସତ ସତିକିଆ ଗପ ବନେଇ ଆସିବନିରେ ବାପ! ମୁଁ ପାରିବନି।"

ଗଦାଟା ନିହାତି ମୋଟା ବୁଦ୍ଧିଆ। ସେ ଅଟେଇ ଅଟେଇ କହେ—ଆଲୋ ବୁଢ଼ୀମା, ସତ ଗପ ଫେରେ ବନେଇ ବନେଇ କହିବୁ କିସ ମ? ତୁ ତ ଖାଲି କହିଯିବୁ। ଆମେ ଶୁଣି ଯିବୁଁ—

"ହୁ, ତୁମେ ସବୁ ଆଜି କାଲିକା ପିଲା, ତୁମମାନଙ୍କୁ ଗପ କହି କହି ସୁଖ ନାହିଁ । ଆମେ ଯେତେବେଳେ ସାନ ସାନଟି ଥିଲୁ, ଆମ ଅଜା ଆଈ କେତେ କାହାଣୀ, କେତେ ଗପ, କେତେ ସତଯ କଥା କହୁଥିଲେ, ଆଉ ଆମେ ସେତେବେଳେ ପାଟି ଆଁ କରି ସେ ସବୁ ଗପ ଗିଳୁଥିଲୁ । ସତ ଗପ କହ, ବନେଇ ବନେଇ କହନ, ଏତେ ସବୁ ହୁନ୍ଦର ଆମକୁ ଆସୁ ନ ଥିଲାରେ ବାପ । ଏବେ କାଳ କାଳକୁ ଯେ କ'ଣ ହେବାକୁ ବସିଲା—

"ନା, ବୁଢ଼ୀମା, ତୁ ତୋର ଯା'ଇଚ୍ଛା କହ, ଆମେ ଚୁପ୍ କରି ମୁହଁ ବୁଜି ଶୁଣିଯିବା, ଉଁ-ଚୁଁ କିଛି କରିବାନି" ମାଲା କହେ । ସେ ଅନ୍ୟମାନଙ୍କଠାରୁ ବୟସରେ ବଡ଼—ହେଲା ବା ବର୍ଷେ କି ଦୁ'ବର୍ଷ, ବଡ଼ ତ ? ଆଉ, ତାର ସଭିଙ୍କଠୁ ବେଶୀ ଉତ୍ସାହ ଆଗ୍ରହ ଗପ ଶୁଣିବା ପାଇଁ । ସଦା ଚୁପ୍ କରି ରହେ, ବୁଢ଼ୀମା ଆରମ୍ଭ କରନ୍ତି—

ସେଇଯେ ମ୍ୟୁନିସିପାଲିଟି ପଛକୁ ଗଛ ଝଙ୍କାଳିଆ ଅଂଧାର ଘିଚ୍ ଘିଚ୍ ଗଳି ରାସ୍ତା ଶ୍ୟାମସୁନ୍ଦର ମନ୍ଦିର ଆଡ଼କୁ ଆଙ୍କି ବାଙ୍କି ଯାଇଛି, ସେଇ ବାଟେ ଆଜି ସୁଦ୍ଧା ବି ଗଲେ ଦିନ ଦୁ'ପହରେ ଦେହ ଛମ୍ ଛମ୍ କରେ । ସେଇ ରାସ୍ତା'ର ବାଁ କଡ଼ରେ କେତେ କାଳର କେଉଁ ମାନ୍ଧାତା ଅମଳିଆ ପୁରୁଣା ପୋଖରୀଟେ ଅଛି— ଦେଖିଚ ନା ତୁମେ ସବୁ ?

ହୁଁ କଲ୍ଲା ପୋଖରୀ ।

ଠିକ—କଲ୍ଲା ପୋଖରୀ । କଲ୍ଲାର ଏବେ ଆଉ ଚହ୍ନ ବର୍ଣ୍ଣ ନାହିଁ । ନାଁ ସୁଦ୍ଧା କେହି ଜାଣନ୍ତି ନାହିଁ । ଖାଲି ଅଛି ଗୋଟେ ଅମୁହାଁ ଘର ସେଇ ପୋଖରୀ କୂଳରେ । ଗ୍ରେଟ ପକ୍କାଘର ଖଣ୍ଡେ । ଦୁଆର ଜଲାଝରକା ବୋଲି ଅଦୌ କିଛି ନାହିଁ ତହିଁରେ । କିନ୍ତୁ ତା କାନ୍ଥ ଗୁଡ଼ାକ ବଜ୍ର ପରି ଟାଣ ।

ସାହେବମାନେ ଯେତେବେଳେ ପହିଲେ ଏ ଦେଶକୁ ଆସିଲେ, ତାଙ୍କୁ ଏ ଦେଶୀ ଲୋକେ କହେଇ ଦେଲେ ଯେ, ସେହି ଅମୁହାଁ ଘର ଭିତରେ ନବାବୀ-ଅମଳର ଅକଳନ୍ତା ମୋହର ଅସ୍ରଫି ମଣିମୁକ୍ତା ଧନରତ୍ନ ଠେସା ହୋଇ ରହିଛି । ଶୁଣି ଜଣେ ସାହେବଙ୍କ କି ଝିଆଲ ଗଲା, ଶାବଳ ଟଣେଧାରୀ ଦଳେ ଲୋକଙ୍କୁ ଲଗେଇ ଦେଲେ, କପ୍ତାନ ସାହେବ ମିଲିଟାଙ୍କ କାଛଦାରେ ହୁକୁମ ଦେଲେ—ଟୋଡ଼୍ ଡାଲୋ ! କିନ୍ତୁ ଗଣ୍ଡା ଗଣ୍ଡା ଶାବଳ ଟଣେ ଧା'ର ମରିଗଲା, ବେଣ୍ଟ ଭାଙ୍ଗିଗଲା । ବଙ୍କା ହୋଇଗଲା, କିନ୍ତୁ ଫଳ ହେଲାନି କିଛି । ପୁରୁଣା ମହଲା ଜମି ପଥର ପରି ଶକ୍ତ ହେଇ ରହିଚି, ସେ କାନ୍ଥ ଦେହରେ ଦୁ'ଗୁଣ ଜାଗା ଖାଲି ପଲସ୍ତରା ଝଡ଼ି ଇଟା ଦେଖାଗଲା, କାନ୍ଥ ଦେହରୁ ଖଣ୍ଡେ ବି ଇଟା ଝଡ଼ିଲାନି । ଘଟର ଘର

ହନୁ ଭୁଲିପଡ଼େ। ଲଙ୍ଗୁଡ଼ ଟେକିଦିଏ। ହୁଏତ ଦୁଃଖ କରେ—କଣ ଏଥିକି ? ଏଇ କଣ ତା'ର ଏତେ ଦୁଃଖ, ଏତେ କଷ୍ଟ, ଏତେ ପରିଶ୍ରମର ପୁରସ୍କାର ? ଏଇ କ'ଣ ତା'ର ଏତେ କଉଶଳର ମୂଳ ? ଏଇ କ'ଣ ତା'ର ଜୀବନର ସାର୍ଥକତା···ଚରମ ଲକ୍ଷ୍ୟ ?

ଲଲ୍ଲମିଆଁର ଦାଢ଼ିରେ ଗୋଟାଏ ଗୋଟାଏ ଧଳାବାଳ ଚକ ଚକ କରୁଥାଏ। ଯୁବତୀ ଜମ୍ବୁରୁନ୍ ତାକୁ ହୁଏତ କ୍ଷଣକ ପାଇଁ ଭୁଲିଯାଉଥିବ। ଲଲ୍ଲମିଆଁ ଘରୁ ବାହାରକୁ ଯାଉଥିବାବେଳେ ସେ ଯେମିତି ମିଆଁକୁ ବଳବଳ କରି ଚାହିଁଛି। ମାଙ୍କଡ଼କୁ ନଚେଇ ଶିଖେଇବା ଆଉ ନଚେଇବା ଭିତରେ ଯେମିତି ପୌରୁଷ, ବାହାଦୁରୀ, ସେ କ'ଣ ବାର୍ଦ୍ଧକ୍ୟର ସବୁ କ୍ଷତକୁ ଲୁଚେଇଦେଇପାରେ ? ପାରେ ବୋଲି ଭାବି ହୁଏତ ଲଲ୍ଲମିଆଁ ଜମ୍ବୁରୁନ୍‌କୁ ଏକୁଟିଆ ଘରେ ଛାଡ଼ି ଚାଲିଯାଏ— ରୋଜଗାର କରି ଆଣିବ, ଖାଲି ଆପଣା ପେଟ ପାଇଁ ନୁହେଁ, ଏଇ ଜମ୍ବୁରୁନ୍‌ର ପେଟପାଇଁ ବି। ଆଉରି ତା' ସଉକ୍ ବି ଅଛି।

ଥରେ ଥରେ ଲଲ୍ଲମିଆଁ ଅନୁକୂଳ କରି ଗଲାବେଳେ ଯୋଡ଼ାଏ ଗୁଆ ଆଣି ମାଙ୍କଡ ଦଧାଣୀ ଆଗରେ ମୁଦା ବସାଏ—ଆଚ୍ଛା, ସଚ୍ ସଚ୍ କହିବୁ ହନୁ ଦଧାଣି, ଏବାର୍ ଜ୍ୟାଦା ହୋଗା କି କମ୍ ଥି ? ପୁଣି ପଚାରେ— "ଭାବିକା ବାସ୍ତେ ଶାଡ଼ୀ ଲଏଗା କି କାଁଚ ? ସଚ୍ ବତା···ବତା ତୋ ବନ୍ଦରକା ବେଟା !"

ଜମ୍ବୁରୁନ୍ କି କାମରେ ଯାଉଥାଏ, ଫେରିପଡ଼ି ଚାହେଁ। ସେ ଯୋଉଁ ମୁଦାଟିକୁ 'ହଁ' ବୋଲି ଭାବିଥାଏ ହନୁ ସେଇ ମୁଦାଟି ଉଠାଏ···ଦୈବାତ୍। ଜମ୍ବୁରୁନ୍ କହିପକାଏ—'ଶାଡ଼ୀ···ଶାଡ଼ୀ।' ମିଆଁ ବିବି ଦୁହିଁଙ୍କର ଖୁସି କୁଣ୍ଢେମୋଟ ହୋଇଯାଏ।

ଯଉଁଥର ଦୈବାତ୍ ନାହିଁ ମୁଦାଟାଏ ଉଠାଏ ସେଥର ମିଆଁ କହେ— "ମୁଁ ଏଇଟାକୁ ହିଁ ମୁଦା ପାଞ୍ଚିଥିଲି। ଦୁହିଁଙ୍କର ସାଲିସ୍ ହୋଇଯାଏ···ଏଇ ମାଙ୍କଡ଼ ଦଧାଣିର ମଧ୍ୟସ୍ଥତାରେ। ଦରବୁଢା ଲଲ୍ଲୁ ଓ ଯୁବତୀ ଜମ୍ବୁରୁନ୍‌ର ସାଲିସ୍। ସେଇ ସାଲିସ୍‌ରେ ଯେମିତି ସେ ପରସ୍ପରକୁ ଚିହ୍ନନ୍ତି···ପରସ୍ପରକୁ ବୁଝିବା ପାଇଁ ଚେଷ୍ଟା କରନ୍ତି।

ମିଆଁ ପୁଣି ପଚାରେ, "ଏ ବନ୍ଦର ତେ କହ ଦେ ସଚ୍ ସଚ୍ ରାମଚନ୍ଦ୍ରକା ଦୂତ୍ ରହେଗା ତୋ ସାଫ୍ ବତାଏଗା— ଏ ବିବି ସାହେବାକା ବଚ୍ଚା ହୋଗା ?"

ହନୁ ଯେମିତି ଶିଖିଥାଏ ସେମିତି ମାଙ୍କଡ଼ଚିତ ମାରି 'ହଁ' ଜଣାଏ।

ମିଆଁ ଖବ ଦହେଁ ହସନ୍ତି । ମିଆଁ ଫେର କହେ—"ଆଚ୍ଛା ହନୁ, ତୁ ହଟ୍ ବତାଇବୁ, ଏ ବିବି ସାହେବାର ବେଟା ପୈଦା ହୋବେ ? ବେଟା ···ବେଟା··· ଲଡ଼୍‌କା, ଲଡ଼୍‌କା ? ବତା !"

ବହୁ ସେ ବେତଟାକୁ କସ୍‌ତ୍ ଦିଏ । ହନୁ ଲେଉଟ ବାଜି ଖେଳି ପେଟ ଦେଖାଇ ପଡ଼ିଯାଏ । ମିଆଁ କହେ—"ଉସ୍‌କୋ ଆଚ୍ଛା କରକେ ଖାନେ ଦୋଗେ ତୋ ଲଡ଼୍‌କା ହୋଗା ।"

ଜହୁରୁନ୍ ବିବି କେତେ ଶର୍ମରେ ଛିଇ ଦେଖାଇ ମୁହଁ ବୁଲାଇନିଏ··· ହଲଗଜର ଖୁବ ଫେରାଇ ଚାଲିଯାଏ । ମିଆଁ ଲଖ୍‌ର ମନ ଆଉ ତା'ଘରେ ରହେ ନାହିଁ ··ଘରେ ଜାଗା ଧରେ ନାହିଁ । କ୍ଷଣକ ପାଇଁ ତା'ର ବୟସ ଆଠର ଦଶବର୍ଷ କମିଲା ପରି ସେ ଅନୁଭବ କରେ ।

ମନୁଷ୍ୟର ମନକଥା ବୁଝିବାର ଶକ୍ତି ନଥାଏ ବୋଲି ନା କ'ଣ ଲଖ୍‌ମିଆଁର ଏ ମନଭୁଲାଣିଆ କଥାରେ ଟିକିଏ ବୋଲି ଆନନ୍ଦ ପାଏ ନାହିଁ । ଦୁଃଖ ବି କରେ ନାହିଁ । ଖାଲି ନୁଣ୍ଡ୍‌ଗ୍ରଣ୍ଡା ତା'ର ପଛେ ପଛେ ଗୋଡ଼ାଏ ବାହା ଦୁଆରେ ଘାଇଁ ନାଚ ଦେଖାଇବାପାଇଁ । ହୁଏତ ସେ ଅବା ମନେ ମନେ ଭାବୁଥିବ ସେ ଆପଣା ପଟରୁ ପଟେ ଆପେ ଚାଲନ୍ତି ।

ପହିଲୁ ପହିଲୁ ହନୁ ଅଳ୍ପ ନାଚିଲା ପରେ ବଡ଼ ଥକାପଡ଼େ । ସେଇ ଥକାରେ ସେ ପାଏ ଆନନ୍ଦ; ଆନନ୍ଦ ନୁହେଁ ···ସନ୍ତୋଷ । ତା' ଝ ଉଦରର କ'ଣ ସେ ପୂରେଇ ନେଇଚି ବୋଲି ତା'ର ଆନନ୍ଦ । ହୁଏତ ସେ ଭାବେ । କିନ୍ତୁ ଝ'ଡ଼େ ସେତେବେଳେ ବନ୍ଦି ବାଡ଼େଇ ଆଉଥରେ ନାଚିବାକୁ ହୁକୁମ୍ କରେ ସେତେବେଳେ ତା' ସୁଖସ୍ୱପ୍ନ ଭାଙ୍ଗିଯାଏ । ହୁଏତ ସେ ଚେଷ୍ଟାକରେ ଏହି ଆନନ୍ଦ ପାଇବାକୁ ଯେ, ସେ ଆଉଥରେ ପଇସା କମେଇବ ··ଆଉଥରେ ରୋଜଗାର କରିବ । କେତେ ଖୁସି ·· କେତେ ଆନନ୍ଦ !

ସେ ଖାଲି ଲଖ୍‌ମିଆଁର ମୁହଁକୁ ଅନେଇଥାଏ । ଲଖ୍‌ମିଆଁର ମୁହଁରେ ଟିକିଏ ଭାବର ପରିବର୍ତ୍ତନ ଦେଖିଲେ ସେ ଡରି ମରି କୁଣ୍ଡ ଭଳି ହୋଇଯାଏ । ଲୋକେ ତା' ନାଚକୁ କେତେ ଆନନ୍ଦ କରନ୍ତି ତା'ର ଖବର ସେ ପାଏ ନାହିଁ···ତା' ପାଖରେ ପହଞ୍ଚେ ନାହିଁ । ସେ କେବଳ ଲଖ୍‌ମିଆଁର ଆଦେଶ ପାଇ ନାଚିଯାଏ । ସେଇ ଆଦେଶଟାଇ ତା'ର ପ୍ରଶଂସା · ବାହାଦୁରି, ହନୁ !

ଲଖ୍‌ମିଆଁ ଗାଏ—ହେ ନଟେ । କେତେ ରକମ ରକମର ନାଚ ନାଚେ । ଜୋଉଡ଼ୁଣୀ ହୁଏ, ଦହି ବିକେ । ଚଉକିଆ ହୋଇ ପହରା ଦିଏ । ସାହେବ ହୋଇ ହୁଙ୍କାର କରେ । ସାଧୁ ହୋଇ ମାଳା ଜପେ । ମୁସାଫିର୍ ହୋଇ ପରଦେଶ ଯାଏ । ଭୁଆସୁଣୀ ହୋଇ ଘରକୋଣରେ ଲୁଚେ । କେତେ ପ୍ରକାର କେତେ ଛିଇ ।

ପ୍ରଥମେ ପ୍ରଥମେ ସେ ନାଚ ଭିତରୁ ହନୁ ଗୋଟିଏ ନୂଆ ରସ ପାଉଥିଲା । ମାଙ୍କଡ଼ ଜୀବନ ତା'ର ଗୋଟାଏ ଟେକ, ଉନ୍ନତ ବା ମୋକ୍ଷ ପାଇଲା ପରି ସେ ନିଜକୁ ଟିକିଏ ବଡ଼ ମନେ କରୁଥିଲା । ବାଟରେ ହାକିମ ହପଟି ଦେଖିଲେ ସେ ହୁଏତ ଭାବୁଥିବ ସେ କିଛି କମ୍ ନୁହେଁ । କିନ୍ତୁ ଧୀରେ ଧୀରେ ତା'ର ସେ ନାଚରେ ଅବସାଦ ଆସିଲା । ନାଚିବାର ଏକାସିଆ ଧାରାରେ ତା'ର ଗର୍ବ ତା'ର ସୁଖ କୁଆଡ଼େ ହଜି-ଯାଉଥିଲା । ଅପଣାକୁ ରଙ୍ଗ ବେରଙ୍ଗ କରି ବାରମ୍ବାର ସୁଆଙ୍ଗ କରିବାରେ ଯେମିତି ପଉରୁଷ ନାହିଁ; ଅଛି ବେହିଆମି । ଥିଲେ ଅବା ସେଇ ବେହିଆମି ଥିବ । ତଥାପି ସେଇ ଅଲାଜୁକପଣକୁ ବିକି ଖାଇବା ତା'ର ପେଉସା । ସେ ବୁଝୁ ନ ବୁଝୁ ସେକଥା—କିନ୍ତୁ ନାଚଯାଏ...ନାଚଯାଏ ଗୋଟିଏ ଯନ୍ତ୍ର ଭଳି ।

ଯେଉଁ ଦିନ ଘରକୁ ଫେରିଯାଇ ଖୁଣ୍ଟରେ ବନ୍ଧାହୁଏ ସେଦିନ ସେ ହବେ ତା'ର ଗୋଲାମି ମନୁଷ୍ୟତ୍ୱ ଦିନେ ଦୁଇଦିନ ପାଇଁ ଲୋପ ପାଇଲା । ମଣିଷ ଭଳି ଦେଖିବାକୁ ଯାଇ ସେ ଯେପରି ଭାବରେ ମଣିଷର ଅଯଥା ଅନୁକରଣ କରିଆସିଛି ତା'ର ପ୍ରାୟଶ୍ଚିତ୍ତ ସେ କରିବ, ସେଇ ଖୁଣ୍ଟ ପାଖରେ ନାମ ସଙ୍କୀର୍ତ୍ତନ କଲା ପରି । ସେଇଥିରୁ ସେ ହୁଏତ ଆନନ୍ଦ ପାଏ, ଆଉ ଆନନ୍ଦ ଉପଭୋଗ କରେ ମିଆଁ ବିବି ଦୁହିଁଙ୍କର ଆନନ୍ଦ...ଆହ୍ଲାଦ ଦେଖି । ତା'ର ସହଜ ସହଜାତ ପଶୁ ପ୍ରବୃତ୍ତି ତାକୁ ପରି ଆନନ୍ଦରେ ଉଲ୍ଲସିତ କରେଇଦିଏ...ନଚେଇଦିଏ । ପୁଣି ପରକ୍ଷଣରେ ସେ ହୁଏତ ମଣିଷର ଅନୁକରଣରେ ମଣିଷର ବୁଦ୍ଧିମିଶା ସହାନୁଭୂତିକି ଯେନ ଏଣିକି ତେଣିକି ଗ୍ରହୁଁଥିବ, ତା'ର ହିଂସା ହେଉଥିବ...ପରି ଆନନ୍ଦରେ କାତର ହେଇପଡ଼ୁଥିବ...ମଣିଷ ପରି । ତା'ପରେ ହୁଏତ ତ ର ଚେତା ଆସୁଥିବ । ସେ ଭାବୁଥିବ, ମଣିଷ ଦେହଟା କ'ଣ ଏଡ଼େ ପାପ ! ସେ ସିଦ୍ଧାନ୍ତ କରୁଥିବ, ବରଂ ଏଇ ପଶୁଜୀବନ ଭଲ ।

କେତେବେଳେ କିମିତି ମିଆଁ ବିବି ଦ'ଜଣ କଜିଆ କରନ୍ତି । ବିବି ଅଭିମାନ କରି ବସେ । ମିଆଁ ତାକୁ ସାକୁଲିଏ...ଫୁସୁଲାଏ...କେତେ କଅଁଳ କଥା କହି ମନ ଭୁଲାଇବାକୁ ଚେଷ୍ଟା କରେ । ସେ କଥାଗୁଡ଼ାକ ହନୁକୁ ଭଲ ଲାଗେ ନାହିଁ । ମଣିଷ ଏଡ଼େ ନରମ...ଏଡ଼େ କାହିଲ ! ଲଗ୍ନମିଆଁ ଉପରେ ସେ ରାଗିବାକୁ ଚାହେଁ । କେଡ଼େ ଦୁର୍ବଳ ଏ ପୁରୁଷ ସତେ ! କିନ୍ତୁ ପ୍ରକୃତରେ ସେ ରାଗେ ଜମ୍ବୁରୁନ୍ ଉପରେ । ଲଗ୍ନମିଆଁ ର ସବୁ ସହାଗ, ସବୁ ଶରଧା, ସେଇ ଯେମିତି ଛଡ଼େଇ ନେଇଛି ଜବର୍‌ଦସ୍ତି; ହନୁପାଇଁ ଟିକିଏ ବାଦ୍ ବାକି ବଳିପଡ଼ୁନାହିଁ କିଛି ।

ସେତିକି ନୁହେଁ । ଲଗ୍ନମିଆଁ ର ଯାହାକିଛି ଭଲ, ଯାହାକିଛି ସୁନ୍ଦର, ସେ ସବୁକୁ ଏକା ଜମ୍ବୁରୁନ୍ ମାଡ଼ିବସି ଭୋଗ କରୁଛି । ତଥାପି ତା'ର ମନସାଧ ମେଣ୍ଟୁ ନାହିଁ । ରାକ୍ଷସୀଟାଏ । ସେଥିପାଇଁ ଲଗ୍ନମିଆଁ ର ବାହାରଟା ଏଡ଼େ ଖିପଟେ । ସେ ଘର ଭିତରେ ତା'ର ସବୁ କୋମଳତା, ସବୁ ସରସତା'ତକ ଜମ୍ବୁରୁନ୍ ଆଗରେ

ଉଠେଇଦେଇ ବାହାରକୁ ନେଇଯାଏ ସବୁ କର୍କଶ ଓ ନିଷ୍ଠୁର ସ୍ୱଭାବ ସାଇପଡ଼ିଶାଙ୍କ ଆଗରେ ବାଣ୍ଟିବାପାଇଁ । ତା'ର ଦାଢ଼ିଗୁଡ଼ାକ ଘରଭିତରେ କେଡ଼େ ସାଉଁଳିଆ, ନରମ, କଅଁଳ ଥାଏ । ବାହାରକୁ ବାହାରିଲେ ସେଗୁଡ଼ାକ ଯେମିତି ଅତି ରୁକ୍ଷ, କର୍କଶ ଭାବରେ ଛିଡ଼ାଛିଡ଼ା ହୋଇଯାଆନ୍ତି ।

ଏ ସବୁ ହେଉ ଜମ୍ବୁରୁନ୍‌ବବର କାଣ୍ଡ । ସେଇ ଦାୟୀ ଏଥିପାଇଁ । ମାଙ୍କଡ଼ ତା ମନେ ମନେ ଠିକ୍ କରେ । ତା' ଉପରେ ଲକ୍ଷ୍ମିଆଁର ଯେଉଁ ନିଷ୍ଠୁର ବ୍ୟବହାର ହେଥିପାଇଁ ଲକ୍ଷ୍ମିଆଁ ଦୋଷୀ ନୁହେଁ । ଜମ୍ବୁରୁନ୍ ସେଇ ନିଷ୍ଠୁରତା ଛଡ଼ା ଆଉ କ'ଣ ରଖିଥାଏ ତା ଭିତରେ ଯେ, ସେ ଦଅନ୍ତା ।

ହନୁ କେତେ ଜମ୍ବୁରୁନ ଦେଖିଛି । ସମସ୍ତେ କିନ୍ତୁ ଏମିତି ହୁଅନ୍ତି । କେଣି ଭାଗର ମାଇପେ ଘର କୋଣରୁ ଥାଇ ହନୁର ନାଚ ଦେଖନ୍ତି । ଯେମିତି ତାଙ୍କ ଘର ଭିତରଟା ଭାରି ସୁନ୍ଦର । ସେ ସୁନ୍ଦରପଣକୁ ଅନାମତେ ପଦାରେ ପକେଇଦେବାଟା ଭାରି ଅସଭ୍ୟ···ଅଲକ୍ଷଣ କଥା । କାଳେ ଘର ଅସୁନ୍ଦର ହୋଇଯିବ । ତାଙ୍କ ପୁରୁଷମାନଙ୍କୁ ସେ ଯେମିତି ଛାଡ଼ିଦେଇଛନ୍ତି ବାହାରକୁ ସୁନ୍ଦର କରିବାପାଇଁ । ବାହାର ଆଉ ଭିତରକୁ ସୁନ୍ଦର କରିବାରେ ମାଇପେ ମିଣିପେ ସମସ୍ତେ ଯେମିତି ମିଳିମିଶି ଲାଗିପଡ଼ିଛନ୍ତି । ହନୁ ଥରେ ଥରେ ସେଇ ପରସ୍ପର ସାହଚର୍ଯ୍ୟର ଭାବକୁ ହୃଦୟରେ ଚେତେ । ବେଶ ଭାରି ଆନନ୍ଦରେ ନାଚେଉଠେ । କିନ୍ତୁ ଜମ୍ବୁରୁନ୍ ଘରକୁ ଆସିଲେ ତା'ର ସେ ନାଚିବାର ସ୍ପୃହା ଲୁଚିଯାଏ କେମିତି କୁଆଡ଼େ । ଜମ୍ବୁରୁନ୍ ଅବଶ୍ୟ ଲକ୍ଷ୍ମିଆଁକୁ କହେ ନାହିଁ କେବେ ମାଙ୍କଡ଼ ନଚେଇବାପାଇଁ । କହିଲେ ବି ହନୁ କଦାପି ନାଚନ୍ତା ନାହିଁ । କାରଣ ଜମ୍ବୁରୁନ୍‌ଟା ଭାରି ଅସୁନ୍ଦର···ତା' ଉପରଟା ନ ହେଉ, ତା' ଭିତରଟା ଅତି କଦର୍ଯ୍ୟ । ପଶୁର ସହଜାତ ବୃତ୍ତି ତାକୁ କହିଦିଏ । ଜମ୍ବୁରୁନ ତାର ନିଜର ସେଇ ଅସୁନ୍ଦରପଣକୁ ଦେଖେଇପକେଇବା ପାଇଁ କି କଅଣ, ଲକ୍ଷ୍ମିଆଁର ସବୁ ସୁନ୍ଦରପଣକୁ ଦାବି କରି ବସେ । ହନୁ ହୁଏତ ଭାବୁଥିବ, ଦୁନିଆର ଏମିତିକା ଜମ୍ବୁରୁନ୍‌ମାନେ ଖାଲି ଘରକୁ ଅସୁନ୍ଦର କରନ୍ତି ନାହିଁ, ସମାଜକୁ ବି ଅସୁନ୍ଦର କରନ୍ତି, ମଣିଷଜୀବନକୁ ଅସୁନ୍ଦର କରି ପକାନ୍ତି; ଆଉ ସଂସାରର ମଧ୍ୟ ଅମଙ୍ଗଳ କରନ୍ତି ।

ଗାଁଗହଳିରୁ କେତେ ଘରକୋଣରେ ଜମ୍ବୁରୁନ୍‌ଙ୍କୁ ଆସି ମାଙ୍କଡ଼ ଦଥାଣି ଆଗରେ ମୁଦା ବସାନ୍ତି । ହନୁର ନାଚ ସରିଲେ ଲକ୍ଷ୍ମିଆଁ ବାବୁଭେୟାଙ୍କର, ନହେଲେ ପାଟିଘର କି ନାହାଁକ ପ୍ରଧାନ ଘର, ଯାହା ଘର ଆଗରେ ନାଚଉଥାଏ ତା'ର ଜୟ ହେଉ ବୋଲି କହେ । ହନୁମାଙ୍କ [illegible] ମାରି ଜୟଜୟକାର କରେ । ଲକ୍ଷ୍ମିଆଁ ଲାଟେଇ ପଟେଇ କହିଯାଏ—"ଜୟ ହେଉ, ମଙ୍ଗଳ ହେଉ, ବୋଲବାଲା ହେଉ, ଦୁସ୍ମନ୍ ନିପାତ ହେଉ ।" ଥରକୁ ଥର ହନୁ ଓଲଟବାଜି ଖେଳି ତା'ର

ସମ୍ମତି ଜଣାଇଦାଏ । ତା'ପରେ ହନୁ ତୁଉନ ହୋଇ ମୁହଁ ଖସି କରି ବସିଯାଏ, ସତେ ଯେମିତି କୋଉଁଠୁ ଆସିଲେ ଋଷ୍ୟଶୃଙ୍ଗ ମହାମୁନି · ଆଗତ ଭବିଷ୍ୟ ସବୁ ଜାଣି··· ଏଇନାଗେ ତିନିକାଳର କଥା କହିଦେବେ ପଚ୍ଛୁରୁ କି ପଚ୍ଛୁରୁଣୁ । ତା' ଆଗରେ ଯୋଡ଼ ଯୋଡ଼ ହୋଇ ଗୁଆ ବସିଯାଏ···ଧାଡ଼ିକି ଧାଡ଼ି । କାହାର ମକଦମା ଜିତି ହେବ କି ହାର୍ ହେବ, କିଏ ପରୀକ୍ଷାରେ ପାସ୍ କରିବ କି ଫେଲ୍ ହେବ, କାହାକୁ ସମ୍ପତ୍ତି ମିଳିବ କି ନମିଳିବ, କାହାର ମନ ମାନିଲି ଜାଗାରେ ବାହାଘର ହବ କି ନ ହବ—ଇମିତି କେତେ ପ୍ରଶ୍ନ । ତା' ସାଙ୍ଗକୁ ଲତିମିଆଁର ପ୍ରଶ୍ନଭଳି କେତେ ମାଇପେ ଯେଝା ଗିରସ୍ତମାନଙ୍କୁ କହି ମୁଦା ବସାନ୍ତି—ଝିଅ ହବ କି ନ ହବ, ପୁଅ ହବ କି ଝିଅ ହବ ।

କିନ୍ତୁ ଏଇ ମୁଦା ବସାଇବା ଭିତରେ ଥାଏ ଦୁଇଜଣଙ୍କର ଭାଗ । ଭଲ ଉତ୍ତରରେ ଭାଗୀ ହୁଅନ୍ତି ଦୁଇଜଣ । ମନ୍ଦ ଉତ୍ତରରେ ଦୁଃଖଟା ଯାଇ ପଡ଼େ ସେଇ ଦୁଇଜଣଙ୍କ କାନ୍ଧ ଉପରେ । କିନ୍ତୁ ଲତିମିଆଁ ଯେଉଁ ମୁଦା ବସାଏ ସେଥିରେ ଯେମିତି ଜମ୍ବୁରୁନ୍‌ର ଭାଗ ନାହିଁ ।

ଲତିମିଆଁ ଜାଣେ, ଜମ୍ବୁରୁନ୍ ବି ଜାଣେ, ମାଙ୍କଡ଼ ଦାଆଣି ଯାହା କହେ ସେ ସବୁ ସତ ନୁହେଁ । ସତ ହୋଇପାରେ ନା । ଲତିମିଆଁ ଆଖି ଠାରେ, କଥାର ଇଙ୍ଗିତରେ ଯେଉଁ ଗୁଆକୁ ବା ଯେଉଁ ମୁଦାକୁ ବତେଇଦାଏ, ମାଙ୍କଡ଼ ଦାଆଣି ସେଇ ମୁଦାକୁ ଯାଇଁ ଉଠାଏ । ଲତିମିଆଁ ଭରି ଚାଲାକ୍ ଲୋକ । ମୁଦା ବସେଇବା-ବାଲର ଆଖିକୁ ଚାହିଁ ସେ ଠଉରେଇ ନିଏ କଉଁ ମୁଦାଟା ହଁ···କଉଁ ମୁଦାଟା ନା ସେ ମନାସିଲି । ସେଇ ଅନୁସାରେ ସେ ହନୁକୁ ·ଇସାରାରେ ବତେଇଦାଏ । ମାଙ୍କଡ଼ ଦାଆଣି ସେଇ ମୁଦା ଧରେ । କେଉଁଠି ହଁ ହୁଏ, କେଉଁଠି ନା । କାହାର ସତ ହୁଏ, କାହାର ମିଛ । ମିଛ ହେଲି ଲୋକର ମନେ ନ ଥାଏ । ସତ ହେଲି ଲୋକ କାନରେ ଗଣ୍ଠି ପକେଇ ମନେ ରଖିଥାନ୍ତି । ଲତିମିଆଁ ପୁଣି ଦେଖା ହେଲେ କହନ୍ତି । ସେଇ ମାଙ୍କଡ଼ ଦାଆଣିକି ପୁଣି ଜିକେ ସେଇ ଲତିମିଆଁ ପଚ୍ଛରେ—"ଜମ୍ବୁରୁନ୍‌କା ଲଡ଼୍‌କା ହୋଗା ?"

ଏଥର କିନ୍ତୁ ସେ ଠାରେ ନାହିଁ । ଉଁ କି ଚୁଁ କିଛୁ କହେ ନାହିଁ । ଯେଉଁ ପ୍ରକାରରେ ଇସାରା ଦେଇ କଥା କହିଲେ ହନୁ ବା ମୁଦା ପାଖ ଧରେ ସେ ପ୍ରକାର କଥା ସେ କହେ ନାହିଁ । କିମ୍ବା ଯେମିତି ବାଗରେ ଯେଉଁ ଯେଉଁ ପଦ କହିଲେ ହନୁ ତାହାଣ ପଟ ମୁଦା ଧରନ୍ତା ତା' ବି କହେ ନାହିଁ । ଖାଲି ସିଧା ସଳଖ ମୁଦା ବସେଇଦାଏ । ହନୁ ତା' ମନଇଚ୍ଛା ଯେଉଁଟାକୁ ଧରେ । କେତେବେଳେ ହଁ—କେତେବେଳେ ନା । ଲତିମିଆଁ ବାର ବାର ପଚ୍ଛରେ—ସେଇ 'ହଁ', ନା', ଗୋଟାଏ ନିଷ୍ଠାକରି ସେ କେବେ କହେ ନାହିଁ । ମିଆଁ ଭାବେ—ମିଶ୍ରଫଳ ହବାମାନେ,

ମିଳ ହେବ, କିନ୍ତୁ କେତେ ଡେରିରେ ହେବ ? କେତେ ଡେରିରେ ? ମିଆଁ ର ମୁହଁ ଶୁଖିଯାଏ । ଜସ୍ମତୁନ୍‌କୁ ଡାକି କହେ, "ଜସ୍ମତୁନ୍, ଫିର୍ ଭି ଓଇ ବାତ୍—ଦେର ହୈ ।"

ଜସ୍ମତୁନ୍ କିନ୍ତୁ ପରବାସ୍ତ ନ ଥିଲା ଭଳି ମୁହଁ କରି ହାତ ପିଟି ଗୁଲିଯାଏ । ସେ ହୁଏତ ଭାବେ, ତା'ର ବେଲବସ୍ତମ କ'ଣ ଗଲାଣି କି ? ଏତେ ଜଲ୍‌ଦି ପଡ଼ିଚ କଅଣ ! ଛୁଆ ନ ହେଇ ଯିବ କୁଆଡ଼େ ? କିନ୍ତୁ ଲତିଫ୍ ମିଆଁ ଅଶା ଆଉ ଆଶଙ୍କା ଭିତରେ ଲଟପଟ ହେଉଥାଏ । କେତେବେଳେ ସେ କେତେ ପ୍ରକାର ସ୍ୱପ୍ନ ଦେଖେ । କେତେବେଳେ ପୁଅଟିଏ କୋଳରେ ଧରି ଖୁସିହେଇ ଯାଉଥାଏ । କେତେବେଳେ ବା ପୁଅ ମରିଗଲା ବୋଲି କାନ୍ଦକାଟି ଅସ୍ଥିର । ସବୁ କିନ୍ତୁ ସ୍ୱପ୍ନ ।

ଲତିଫ୍ ମିଆଁ ର ଜୀବନଟା କ୍ରମେ କ୍ରମେ କେମିତି ସ୍ୱପ୍ନିଲ ହେଇଆସିଲା । ସେ ଅନେକଟା ଖାଲି ଘରର ବାହାରେ ନୁହେଁ, ଦୁନିଆରୁ ବାହାରେ ଥିଲା ପରି ଥାଏ । ମାଙ୍କଡ଼ ନଗୃଟା ତା'ର ପେଟପାଟଣା । ନ କଲେ ନ ଚଳେ । ଆଉ ଘରଟା ତା'ର ବାଂଧବାଧକତା···ନ ଗଲେ ନ ରହେ ।

ଦାଢ଼ି ଗୁଡ଼ାକ ତା'ର ଗୋଟିଏ ଗୋଟିଏ ହୋଇ ଧଳା ପାଚିବାକୁ ଆରମ୍ଭ କଲାଣି । ଖସୁ କାକର ଖାଇ ତା ମୁଣ୍ଡଟା କେମିତି ଟାଙ୍ଗଣ ଧରିଆସୁଛି । ଦାନ୍ତର ରଗ ଗୁଡ଼ାକ ଢିଲା ହୋଇ ପଡ଼ୁଛି । ତା'ର ମନ ହେଉଥାଏ, ଏଇ ଦୁଃଖ ବେଳରେ, ଯେତେବେଳେ ସେ ନଜର ବୋଲି ଯାହାସବୁ ଦୈନ ଗର୍ବ କରୁଥିଲା, ଗୋଟି ଗୋଟି କରି ତାକୁ ସବୁ ହଜେଇ ଦଉଛି, ସେତେବେଳେ···ସେତେବେଳେ ସେ ଜସ୍ମତୁନ୍‌ର ଟିକିଏ ଭରସା ପାଆନ୍ତା ··· ଖୁବ୍ ପାଖକୁ ପାଖକୁ ଲାଗିଆସି ଖାଲି ଦେହରେ ନୁହେଁ, ମନରେ ବି ଲଗାଲଗି ହୋଇ ଦୁହେଁ ଦୁହିଁଙ୍କୁ ବଡ଼ ନିବିଡ଼ ଭାବରେ ଅନୁଭବ କରନ୍ତେ···ଦରଦ ଲଗାନ୍ତା ।

କିନ୍ତୁ ହାୟ ! ତା' ହବାର ନୁହେଁ । ଜସ୍ମତୁନ୍ ଲତିଫ୍ ମିଆଁ ସାଙ୍ଗରେ ବୁଢ଼ୀ ହୋଇପାରିନାହିଁ । ଦେହ ମନ କେଉଁଟା ଧେଲେ ତା'ର ବୁଢ଼ା ନୁହେଁ । ଦିନକୁ ଦିନ ବଅସ ତା'ର ଯେମିତି କମି କମି ଆସୁଛି । ସେ ଏବେ ବି ଯୁବତୀ । ଅନ୍ତତଃ ତାର ଫେସନ୍ ଫାସନ୍ ଢଙ୍ଗ ଛଇ ସବୁ ତାକୁ ଯୁବତୀ କରି ରଖିଛି । ଦଶବର୍ଷ ଗୋଟାଏ ଦରବୁଢ଼ା ସାଙ୍ଗରେ ଘର କଲା ପରେ ବି ସେ ଯେମିତି ନବଯୁବତୀ ଯେମିତି ଯୁବତୀ ରହିଛି । ତା'ର ଯୁବତୀପଣ ଯେମିତି ସାର୍ଥକ ହେବାକୁ ଆଉରି ବାକି ଅଛି । ଲତିଫ୍ ମିଆଁ ର କଳିଜା ଭିତରେ ଯେଉଁଠି ତା'ର ଜୁଆନର ହାଡ଼ ହାଡ଼ି ବୁଢ଼ାପଣ ମଥା ଟେକି ଠିଆ ହେଉଥିଲା ସେଇଠୁ ଗୋଟାଏ ନିଶ୍ୱାସ ଉଠିଆସିଲା । ଅନେକ ଦିନ ପରେ ସେ ଆଜି ହନୁଟାକୁ ଶରଧା କରି ପାଖକୁ ଟାଣି ଅଣି ଛାତିରେ ଜାକି ଧରିଲା । ଯେମିତି ତା'ର ପୁରୁଣା ଦିନଗୁଡ଼ା···ବିତିଗଲା ବଅସ ଗୁଡ଼ାକର ସାକ୍ଷୀ

ଦେବାକୁ ଏଇ ଏକା ବାକି ରହିଛି । ଲତ୍ରମିଆଁର ଦାଢ଼ି ଖୁଣ୍ଟକ ହନୁକୁ ଆଉଁସିଲା ପରି ଲଗିଲା କି କ'ଣ ସେ ଆରାମରେ ଛାତି ଉପରେ ପଡ଼ି କୁଁ କୁଁ ହେଉଥାଏ ।

ଥରେ ମାସକ ପରେ, କଉଁ ଦୂର ଦୂର ଗାଁରେ ମାଙ୍କଡ଼ ନଚେଇ ବୁଢ଼ାମିଆଁ ମାଙ୍କଡ଼ ଦଆଣିକି ଧରି ଘରକୁ ଫେରିଲାବେଳକୁ ଦେଖିଲା, ଘରେ କବାଟ ବନ୍ଦ... ଜଞ୍ଜିର ଦଅଯାଇଚ ବାହାରୁ । ଲତ୍ରମିଆଁ ଭାବିଲା, ଜସ୍ମୁତୁନ୍ ପଡ଼ିଶାଘରକୁ ଯାଇଥିବ କାମରେ । କିନ୍ତୁ କିଜାଣି କାହିଁକି ତା' ଛାତି ଭିତରେ ଗୋଟେ ଛୁଣିଆ ପଶିଗଲା । ସେ ବଡ ପାଟିକରି ଡାକିଲା —"କାହାଁ ଗୟୀ ହୋ...ଶୁନତୀ ହୋ କି ନେହିଁ...ହାଁ ବବ, କାହାଁ ଗେୟୀଲେ !"

କେହି ଶୁଣିଲେ ନାହିଁ । ସାହି ପଡ଼ିଶାରୁ ଲୋକେ ଦଉଡ଼ି ଆସିଲେ । ସମସ୍ତେ କହିଲେ—ଜସ୍ମୁତୁନ୍ ଟିକିର ପନ୍ଦର କୋଡ଼ିଏ ଦିନ ହେବ ଦେଖାନାହିଁ । ଭାବିଲେ, ବାପଘରକୁ ଯାଇଥିବ ।

ବାପଘରୁ ଖବର ଆସିଲା—ଜସ୍ମୁତୁନ୍ ଯାଇନାହିଁ ।

ବୁଢ଼ା ଲତ୍ରମିଆଁ ମୁଣ୍ଡରେ ହାତ ଦେଇ ବସିଗଲା । ଗାଁ ଲୋକେ କହୁଥିଲେ ବୁଝେଇଲେ—ମାଇକିନାଟା ଖରାପ ଥିଲା · ଲକ୍ଷଣ ଭଲ ନ ଥିଲା...ଅମଙ୍ଗଳୀଟା... ଯାଇଚ ଭଲ ହେଇଚ, ଘରୁ କାଳ ଯାଇଚ । ଆଉ ଗୋଟେ ଦେଖି ନିକା ହେଇପଡ଼ ।

ଲତ୍ରମିଆଁ ସବୁ ଶୁଣିଲା । ଗୋଟି ଗୋଟି କରି ସମସ୍ତଙ୍କ କଥାକୁ ଏପାଖ ସେପାଖ କରି ଓଲଟେଇ ପାଲଟେଇ ଦେଖିଲା । କଉଁ କଥାଟା ତା ମନରେ ବସିଲା ନାହିଁ । ଦଶବର୍ଷ ସାଙ୍ଗରେ ଘର କଲା ପରେ ଜସ୍ମୁତୁନ୍ ଲାହିକୁ ଛାଡ଼ି ପଳେଇବ ? ଅସମ୍ଭବ ! ମିଛ-ମିଛ, ସମସ୍ତେ ମିଛ କହୁଛନ୍ତି । ସମସ୍ତେ ଯିମିତି ତା'ର ଶତ୍ରୁ । ସମସ୍ତେ ତାକୁ ମିଛ କହି ଜସ୍ମୁତୁନ୍ ଉପରେ ତା'ର ରାଗ ଚଢେଇ ଦଉଛନ୍ତି । ଜସ୍ମୁତୁନ୍ ଯଦି ଫେରେ, ସେ ଯେମିତି ଆଉ ତାକୁ ଘରକୁ ନ ନବ—ଏଇ ପାଞ୍ଚ ସମସ୍ତଙ୍କର । ସମସ୍ତେ ମେଳ ବାନ୍ଧି ପରାମର୍ଶ କରି ଏ କଥା କହୁଛନ୍ତି ।

ଗୋଟି ଗୋଟି ହୋଇ ଗାଁ ଲୋକେ ବିଦାୟ ନେଲେ । ଜସ୍ମୁତୁନ୍ ପାଇଁ ସମସ୍ତଙ୍କର ଯେତେ ସହାନୁଭୂତି ସବୁ ଯେମିତି ଯେଝା ପଛେ ପଛେ ଗୋଡ଼େଇ ଗଲେ । କାହାରି କଥାରେ ଜସ୍ମୁତୁନ୍‌ର ଖାଲି ଜାଗାଟା ପୂରି ଉଠିଲା ନାହିଁ । ଜସ୍ମୁତୁନ୍ ନାହିଁ; ନ ଥିଲା ଘରଟା ଖାଁ ଖାଁ ଗୋଡ଼େଇଚାଲା ପଡ଼ି । ଲତ୍ରମିଆଁ ଘର-ଭିତରକୁ ପଶିଯାଇ ଘରର କବାଟଟାକୁ ଧଡ଼୍କିନା କିଳିଦେଲା । ତା'ର ମନ ହେଲା, ଖୁବ୍ ଜୋର୍‌ରେ ସେ ଥରେ ଡାକିବ—'ଜସ୍ମୁତୁନ୍' !

ସେ ଡାକ ଶୁଣି ସେଇ ଘରଭିତରୁ ସତେ ଅବା ଜମ୍ଭୁରୁନ୍ ବାହାରି ଆସିବ, ଯେଉଁଠି ପାରେ ସେଠି ସେ ଥାଉ ପଛେ । କିନ୍ତୁ ସେ ଡାକପାରିଲା ନାହିଁ । ସାନ୍ଧ୍ୟପଡ଼ଣା ସମସ୍ତେ ଯେମିତି ଆସି ତା ମୁହଁଟାକୁ ବନ୍ଦ କରି ଧରିଲେ । ସେ ଚିତ୍କାର କରିପାରିଲା ନାହିଁ । ଅଣନିଶ୍ୱାସୀ ହୋଇପଡ଼ିଲା । ମାଙ୍କଡ଼ଟାକୁ ଖୁଣ୍ଟରେ ବାନ୍ଧିଦେଇ ସେ ଧଡ଼୍‌କିନା ପଡ଼ିଗଲା ତଳେ ।

କେତେବେଳକେ ସେ ବୁଝିପାରିଲା, ସେ କାନ୍ଦୁଛି । ଆଉ କାନ୍ଦିବାରେ ସେ କେବଳ ଜମ୍ଭୁରୁନ୍‌ର ଅତ୍ୟାଗ୍ରହ, ସ୍ତ୍ରୀ ଜାତିର ଈଶ୍ୱରତାକୁ ଶତମୁଖରେ ପ୍ରଶଂସା କରିଯାଉଚି ମାତ୍ର । ସେ ସ୍ତୁତିରେ ସ୍ତାବକର ରକ୍ତ ପାଣି ହୋଇ ଲୁହ ପାଲଟିଯାଏ । କିନ୍ତୁ ସେ ଲୁହ ଆଉ ଦୟା ସହାନୁଭୂତିର ତାପ ପାଇ ବାମ୍ପ ହୋଇ କାହାର ହୃଦୟକୁ ବୁଝି ପକାଏ ନାହିଁ । ମଲା ଲୁହର ମୂଲ୍ୟ ହେବାପାଇଁ ଜଣଙ୍କ ଜୀବନ କି ଗରଜ !

ଧୀରେ ଧୀରେ ସେ ଲୁହ ପୋଛିଲା । ପୋଛି ଗୃହିଁଲା ସେ କାଉଁଚିଆ ଘରଟାକୁ । କେହି କୁଆଡେ ନାହିଁ । ତା' ପାଇଁ କେହି କାନ୍ଦୁନାହାନ୍ତି । କାହାରି ମୁଣ୍ଡ ବଥାଉନାହିଁ । ଘରର ଅନ୍ଦିକନ୍ଦି ବୁଲି ସେ ଦେଖିଲା । ଯଉଁଠି ଜମ୍ଭୁରୁନ୍ ବସେ···ଯେଉଁଠି ଜମ୍ଭୁରୁନ୍ ଶୁଏ···ଯେଉଁଠୁ ଠିଆ ହୋଇ ଲଟ୍ରମିଆଁର ମାଙ୍କଡ଼ ନାଚ ଦେଖେ—ସବୁଠିକି ଗଲା । ଜମ୍ଭୁରୁନ୍ କାଲେ କଉଁଠି ଲୁଚିଥିବ ଏଥିପାଇଁ ନୁହେଁ । କେହି କାଲେ ଜମ୍ଭୁରୁନ୍ କଥା କହିପାରିବ ଏଇ ଆଶାରେ । କଉଁଠୁ କିଛି ସନ୍ଧାନ ପାଇଲା ନାହିଁ । ଜମ୍ଭୁରୁନ୍ ଏଇ ଘରୁ ଚାଲିଗଲା, କେହି ଜାଣିଲେ ନାହିଁ ! କି ଆଶ୍ଚର୍ଯ୍ୟ !

ଶେଷରେ ସେ ଯାଇ ଧରିଲା ହନୁମାନ ମାଙ୍କଡ ଢଆଁଣିକି । ସେ ନଥିଲା, ସେ ଦେଖି ନାହିଁ । ସେ ଲଟ୍ରମିଆଁ ସାଙ୍ଗରେ ଥିଲା । ହୁଏତ ଲଟ୍ରମିଆଁର ଦୁଃଖ ତାକୁ ବାଧିଥିବ । ଏତେ ବଡ଼ ଦୁନିଆଟା ଭିତରେ ଆଜି ଏଇ ମାଙ୍କଡ଼ ଗୋଟିକ ଯେମିତି ତା'ର ସାଥୀ · ତା'ର ସାହାଭରସା ।

ସେ ବନ୍ଦରକୁ ପାଖକୁ ଆଣିଲା । ଧୀରେ ଧୀରେ ତାକୁ ଆଉଁସି ଦେଇ କହିଲା—'ବେଟା, ସଚ୍ କହିବୁ—ଏକ୍ ବାତ୍ ପୁଛିବି, ସଚ୍ କହିବୁ ?'

ମାଙ୍କଡ଼ ମୁଣ୍ଡ ହଲେଇଲା । ଲଟ୍ରମିଆଁ ଭାବିଲା, ସେ 'ହଁ' କରୁଛି । ଲଟ୍ରମିଆଁ ତା ଝୁଲିରୁ ଯୋଡ଼ାଏ ଗୁଆ ବାହାର କଲା । ବାଛି ବାଛି ଯୋଡ଼ାଏ ନଖୁଣ୍ଡ ଗୁଆ ମାଙ୍କଡ଼ ଢଆଣି ଆଗରେ ଥୋଇଲା । ପୁଣି ହନୁର ପିଠି ଆଉଁସି ଦେଇ ସେ କହିଲା—"ବନ୍ଦର, ସଚ୍ ସଚ୍, ରାମ୍‌କାର୍ଯ୍ୟୀ ହୋଇଥିବୁ···"ହଠାତ୍ ସେ ଅଟକିଗଲା । ଏତେଦିନକେ ତା'ର ମଜହବ୍, ତା'ର ଇମାନ୍, ତା'ର ଇସ୍‌ଲାମ୍, ତାକୁ ଦଣ୍ଡକପାଇଁ ଅଟକେଇଲା । ଆଜିଯାଏଁ କିଜାଣି କେତେ ଥର···ଶହେ ଥର · ହଜାର ଥର, ଲକ୍ଷେ ଥର—

ସେ ଏଇ ମାଙ୍କଡ଼ଟାକୁ ହିନ୍ଦୁର ଦେବତା ରାମଚନ୍ଦର୍‌କା ଦୂତ ବୋଲି କହିଆସିଛି । ଦିନେ ବି ତାକୁ ଖଟ୍‌କା ଲାଗି ନାହିଁ । ସେ ସବୁ ଖାଲି ପଇସା ରୋଜଗାର୍‌ର ଫନ୍ଦା । ମୁହଁର କଥା । ଆଜି ଯେମିତି ସେ ପହିଲୁ ହୃଦୟ ଭିତରୁ ଓଟାରି କଥା କହୁଛି । ସେଥିପାଇଁ ବୋଧହୁଏ ଆଜି ତାକୁ 'ରାମଚନ୍ଦର୍ କା ଦୂତ୍' ବୋଲି ଡାକିବାବେଳକୁ କେଉଁଠି ଅଟକିଯାଉଛି ।

କିନ୍ତୁ ହୃଦୟର ଆବେଗ ତା'ର ଧର୍ମର ବନ୍ଧକୁ ଭାଙ୍ଗି ବହିଗଲା । ସବୁ ଧର୍ମ, ସବୁ ଆଚାର, ସବୁ ବିଶ୍ୱାସ ମୂଳରେ ମଣିଷର ଏ ବେଦନା ଯେମିତି ଏକ···ଅବ୍ୟୟ । ବ୍ୟଥାର ମୂଳାଗ୍ର ସେ ଧର୍ମର ଶିକୁଳିକି ଗଡ଼ ଗଡ଼ କରି ଛିଡ଼ାଇ ଫିଙ୍ଗିଦେଇ ଆତୁର ଜୋର୍‌ରେ ଡାକିଲା—"ସଚ୍ ଯଦି ରାମ୍‌କାର୍ଯୀ ତୁ ହୋଇଥିବୁ, ସଚ୍ ସଚ୍ ବତାଇଦେବୁ, ଜମ୍ହୁରୁନ୍ ଫେର୍‌ବ କି ନାହିଁ ।"

'ନାହିଁ' ବୋଲି ମାଙ୍କଡ଼ ଢାଆଣି ମୁଦା ଧରିଲା । ଚଟାକ୍‌କିନା ପାହାରେ ବହାଇ ଦେଇ ଲତିଫମିଆଁ ରାଗରେ ଲାଲ୍ ହୋଇ କହିଲା—"ଝୁଟ୍·· ଝୁଟ୍···ଭୁଲ୍ ହୁଆ··· ଫିରସେ ଦେଖ୍ ।"

ତରେ ମାଙ୍କଡ ଢାଆଣି 'ହଁ' ମୁଦା ଉଠାଇଲା ।

ଲତିଫମିଆଁ ହନୁକୁ କୁଣ୍ଢାଇ ପକାଇ ତା'ର ନିର୍ଦ୍ଦୟତାର ଅନୁତାପ ଆଉ ପ୍ରାୟଶ୍ଚିତ୍ତ କରୁଥିଲା । ଦୁଇ ଆଖିରୁ କେବଳ ଦୁଇଧାର ଲୁହ ବହିଯାଉଥାଏ । କାହାପାଇଁ କିଜାଣି ?

+ + +

ଦିନ ଚାଲିଗଲା । ନୂଆ ଦିନର ସକାଳ ହେଲା । ଲତିଫମିଆଁ ପୁଣି ବାହାରିଲା ପେଟପାଟଣାକୁ । ସେମିତି ଆଗ ପରି···ଲତିଫମିଆଁ ଯାଏ···ବେଶୀ ଦୂରକୁ ନୁହେଁ, ପାଖ ଆଖ ଗାଁକୁ । ବେଶିଦିନ ରହେନାହିଁ—ଫେରିଆସେ । ଜମ୍ହୁରୁନ୍—ଶୂନ୍ୟ ଘରଟା ବୋଧହୁଏ ଖାଲି ଏକୁଟିଆ ଅନୁଭବ କରି ଲତିଫମିଆଁଙ୍କୁ ବାରବାର ଡାକେ । ଲତିଫମିଆଁ ଯେଉଁଦିନ ଘରକୁ ଫେରେ, ଥରେ ଚାରିଆଡ଼କୁ ଚାହେଁ, ଜମ୍ହୁରୁନ୍ ଆଉ ଫେରିଆସିଲା କି ? ନିରାଶ ହୁଏ । ନିରାଶ ହୋଇଯାଇ ବସେ ମାଙ୍କଡ଼ ଢାଆଣି ପାଖରେ । ଦୁଇଟି ଗୁଆ ରଖିଥାଏ—ନଖୁଣ୍ଟ ଗୁଆ । ହନୁ ଆଗରେ ବସାଇଦେଇ ସବୁଦିନେ ସେମିତି ପଚାରେ—'ସଚ୍ ସଚ୍ ଜମ୍ହୁରୁନ୍ ଫିରବ ?'

କେତେବେଳେ ଉତ୍ତର ପାଏ—'ହଁ', କେତେବେଳେ 'ନା' । ବାରବାର ପଚାରେ । ଭାବେ, ମିଶ୍ରଫଳ । ଫେରିବ, ଲେକିନ୍ ବହୁତ୍ ଡେରିରେ ଫିରିବ । ହୁଏତ ସେ ଫେରିବାକୁ ଚାହୁଁଛି, ବ୍ୟସ୍ତ ହେଉଛି—ଲେକିନ୍ ଫେରି ପାରୁ ନାହିଁ ।

ସେ ମାଙ୍କଡ଼ ଦିଆଣ୍ଟିକୁ ପାଖକୁ ଟାଣିଆଣି କୋଡ଼ରେ ଧରେ । ଗେଲ କରେ । ତା'ର ପାଚିଲା ଲମ୍ବ ଲମ୍ବ ଦାଢ଼ି ହନୁର ଦେହକୁ ମୁଲାୟମ୍ ଲାଗୁଥିବ । ହନୁର ସଁବାଳିଆ ବାଳ ଭିତରେ ଲତିଫମିଆଁ ଆଙ୍ଗୁଳି ପୂରାଇ ଆହୁରି ସାଉଁଳେଇଦିଏ । ହନୁ ତୁନ ହୋଇ ଆରାମରେ ମିଆଁର ଛାତି ଉପରେ ଆଙ୍ଗୁଳି ପୂରାଇ ଆହୁରି ସାଉଁଳେଇ ଦିଏ । ହନୁ ତୁନ ହୋଇ ଆରାମରେ ମିଆଁର ଛାତି ଉପରେ ପଡ଼ିଥାଏ । ମିଆଁ ପଚାରେ—"ହାଁରେ ବନ୍ଦର୍, ତେଁ ଅଗର ଲତିଫମିଆଁ ହୋତା·· ଏତା ଏତା ବଡ଼ା ଦାଢ଼ି ହୋତା,···ପକ୍କା ପକ୍କା ଦାଢ଼ି···ତେରି ଏକ ବଚ୍ଚା ଭି ହୋତି, ଉସ୍‌କା ନାମ ହୋତା, କ୍ୟା କହୋ—ନାମ୍ ହୋତା 'ଜାହୁରୁନ୍', ଠିକ୍ ହୈ ?"

ମାଙ୍କଡ଼ ଅନ୍ୟମନସ୍କ ହୁଏ । ଲତିଫମିଆଁ ତା ପେଟ ଧରି କହେ—"ସୁନୋ ସୁନୋ, ତୁମ୍‌ରେ ଜାହୁରୁନ୍ ବହୁତ ବଡ଼ି ଆଛି···ଖରି ଭଲେ, ନାହିଁ ରେ ? ତେଁ ଉସ୍‌କୋ ଖରି ପିଆର୍ କରତା···ହର୍‌ଘଡ଼ି ଆଁଖ୍‌କେ ସାମ୍‌ନେସେ ନହିଁ ଛୋଡ଼ତା···ହାଁ ରେ, ସୁନୋ—ମଗର୍ ଫିର୍‌ଭି ଏକ୍ ଦିନ୍ ଉସ୍‌କୋ ଛୋଡ଼୍‌କର ଓ କହାଁ ଭଗତି—ଚଢ଼ିଆ ଉଡ଼୍‌ଯାତି—ବନ୍ଦର, ବନ୍ଦର୍, ତୁ ସଚ୍ ବତା, ତୁ କ୍ୟା କର୍‌ତା ?" ବୁଢ଼ା ଆଖିରୁ ଲୁହ ବହିଯାଏ । ମାଙ୍କଡ ଦିଆଣି ମୁହଁଟିକି ଟଳେଇଦେଇ ଲତିଫମିଆଁର ଦାଢ଼ି ଦେଇ ବେକମୂଳରେ ଲୁଚିଇଦେବାକୁ ଚେଷ୍ଟା କରେ ।

---

# କେହି ନୁହେଁ

ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

କଲିକତା ବଡ଼ବଜାରର ଗୋଟିଏ ଅନ୍ଧାରୁଆ ବାଇଲେନ୍ ଭିତରେ ସେଇ ଝିଙ୍କଟ ଅଣଓସାରିଆ ଟିଣ ଘର ଖଣ୍ଡିକରେ ସବୁଦିନ ପରି ସେଦିନ ବି ସଂଜମଜଲିସ୍‌ଟା ବେଶ୍ ଭଲ ହୋଇ ଜମି ଉଠିଥିଲା। ଘର ବୋଇଲେ ଖୁରଟା ବଡ଼ ବଡ଼ ଇଟା କାନ୍ଥ; ତାର ଉପରେ ଲମ୍ବ ଲମ୍ବ ବାଉଁଶ ପକାଇ ଟିଣ କେଇଖଣ୍ଡ ଘୋଡ଼େଇ ଦିଆ ଯାଇଛି। ପଛ ପଟ କାନ୍ଥ ଉପରକୁ ଫୁଟେ ଉଚ୍ଚରେ ଗୋଟାଏ ବଡ଼ ଜଳା— ତାକୁଇ ସେମାନେ ଝର୍କା କହନ୍ତି। ସେଇ ଝର୍କାର ଭିତର ପଟେ ଖଣ୍ଡେ ଅଖା ବନ୍ଧା ହୋଇ ବାଉଁଶ କାଠି ଖଣ୍ଡିକରେ ଝୁଲୁଛି। ରାତିରେ ଦିନେ ଦିନେ ବେଶି ଶୀତ ପଡ଼ିଲେ ସେଇ ଅଖା ଖଣ୍ଡିକ ପକାଇ ଦେଇ ଝର୍କା ମୁଦାଯାଏ। ଘର ଭିତରେ ଚାରିଆଡ଼େ ଚେମଣି ସାଲୁବାଲୁ ହେଉଛନ୍ତି, କାନ୍ଥ, ବାଡ଼, ଚଟାଣ, ସବୁଆଡ଼େ ଖାଲି ଅଲମ୍ଭୁ ମେଞ୍ଚ ମେଞ୍ଚ, ଆଉ ପୋଷ୍ଟେ ବହଳରେ ଚେମଣିଚଟିଆ, ଗୁହ ବସିଗଲଣି।

ପଶ୍ଚିମ ପଟକୁ ଖଣ୍ଡେ ବାଉଁଶ ଟଂଗା ହୋଇ ଅଲଗୁଣୀ ତିଆରି ହୋଇଛି। ତା'ଉପରେ ଖୁନ୍ଦା ହୋଇଛି ରାଇଜଯାକର ମଇଳା ଗାମୁଛା, କୋତରା ଲୁଗା, ଚିରା ତାଳିପକା ଗେଞ୍ଜି, କାମିଜ, କୋଟ ଇତ୍ୟାଦି କେତେ ଖଣ୍ଡ। ଘରତଳେ ବାକ୍ସ, ପେଟେରା, କାଠ ସିନ୍ଦୁକ ହୋଇ ଦଶ ବାର ଖଣ୍ଡ ବାହାରିବ। ପାନ ଖାଇ ସାରି ଚୂନ ହାତ ବୋଳି ବୋଳି କଳା ସିନ୍ଦୁକ ଗୁଡ଼ାକର ବାହାର ପଟ ବିଲ୍‌କୁଲ୍ ଧଳା ଦେଖାଗଲଣି।

ସେଇ ସଂତସଂତିଆ ଅନ୍ଧାରୀ ବଖୁରିଟିରେ ରାତି ହେଲେ ପାଞ୍ଚଟା ମଣିଷ ଚିରା ମୁନ୍ଦୁରା ଦି'ଖଣ୍ଡ ପକେଇ ମୁଣ୍ଡ ତଳେ ଲୁଗା ମୁଟୁଳାଟାମାନ ଦେଇ ଶୋଇପଡ଼ନ୍ତି। ଦିନ ହେଲେ କିଏ କୁଆଡ଼େ ଯାଏ କାହା ସଜରେ କିଏ ବା ଆସି ବସା କଡ଼ରେ ଥିବା ଉଡୁଧବା ନନା ହୋଟେଲରୁ ଗଣ୍ଡାଏ ଖାଇଦେଇ ପୁଣି ଯାଇ କାମରେ ଜଇନ କରେ, ସେ କଥା ଅନ୍ୟ କାହାରି ନଜରରେ ପଡ଼େ ନାହିଁ।

ପାଞ୍ଚଜଣଯାକ କର୍ପୋରେଶନ୍‌ର କୁଲି। ରାସ୍ତା ମରାମତି କରନ୍ତି। କେଉଁଠି ରାସ୍ତା ଖରାପ ହେଲେ ଦୁଇ ପଟେ ଦୁଇଟା ବାଉଁଶ ଓଗାଳି ପୋତି ଲାଲ ଲଣ୍ଠନ ଜାଳି, "ରାସ୍ତା ବନ୍ଦ" ଟିଣ ଖଣ୍ଡିକ ଝୁଲେଇଦେଇ ସେଥି କାମରେ ସେଥି ଲାଗିଯାଆନ୍ତି। କିଏ ଆଲକାତରା ଢାଳେ, କିଏ କାଙ୍କ, କୋଦାଳ ନେଇ ପଥର ଭାଡ଼େ,

କିଏବା ଖଣ୍ଡିଏ ଲୁହା ସ୍କେଲର ଝାଣିଁ କରକସ୍ତ ସମାନ କରୁକରୁ ଝାଳ ଗମ ଗମ ହୋଇ ଅନ୍ୟମାନଂକ ସଂଗରେ ପାଟି କରୁଥିବେ—

ହେ ଲେ ସା……

ସଂଜବୁଡ଼କୁ ହସ୍ତା ଯାଇ ଫେରିଆସିଲେ ସେଦିନ ବସାରେ ନିଦାଘ ମେଳା ବସେ। ପାଲି ଅନୁଯରେ ଜଣେ ଜଣେ ସେ ଦିନକ ର ଗଂଜେଇ ଖର୍ଚ୍ଚ ତୁଲଂଥ। ଖଂଜଣି ମାଡ଼ ହୁଏ, ଭଜନ ବୋଲାଯାଏ, ଗଂଜେଇ ଧୂଆଁ ର ସାଂକୋ ସା 'କେ କେତେ ଦୁନଆଛଡ଼ା ତାକବ ଗପର ହାଲୁକା ଡେଉ ଘର ଭିତରର ଖଣ୍ଡ ପବନରେ ବଂକେଇ ବଂକେଇ ପଇଂତରା ମାରେ। ପାଂଚ ଜଣଯାକଂକର ଦିନଭର ଗୁଲିଚାଲଣି, ଖାଇବା-ପିଇବା, କାମଦାମ, କଥାବାର୍ତ୍ତା ସବୁ ପ୍ରାୟ ଏକାରକମର, କେଉଁଠି ଟିକିଏ ହେଲେ ତଫାତ୍ ନାହିଁ। ତଫାତ୍ କେବଳ ଯାହା ସେମାନଂକର ରାତିର ସ୍ୱପ୍ନଟାରେ !!

ରାତିରେ ସହରର କାଦରେ ଅଚେତ ହୋଇ କିଏ ହୁଏତ ସ୍ୱପ୍ନ ଦେଖେ, ଦୂର ଗାଆଁର ଶାଗୁଆ ତୋଟାମାଳ ଗହଳରେ ଖଂଡେ ଦରପୂରା ଗୁଳଘର ଭିତରେ ଜାଡ଼ରେ ଥରୁ ଥରୁ ହୋଇ କଂପୁଚ ଗୋଟିଏ ଅଣୀ ବରଷର ବୁଢ଼ୀ; ଘୁଆଣି ନ ହୋଇ ଏ ସାଲ ବର୍ଷାରେ ଘରର ଗୋଟାଏ ପଟ କାଂଥ ମାଟିରେ ଫେଟେଇ ପଡ଼ିଲଣି, ତା'ର ଭିତରେ ବୁଢ଼ୀଟି ଗୁହିଁ ରହିଚ ହାକବାଳର ଅସିବା ବାଟକୁ ଅପେକ୍ଷା କରେ। ଶହଡ଼ିଆ ଆଖି ଦି'ଟା ତା'ର ପ୍ରତୀକ୍ଷାରେ କମେ କମେ ବ ଦ ହେଇଉଠୁଚ।

କିଏ ବା ପୁଣି ସ୍ୱପ୍ନ ଦେଖେ, ମଉଳା ପଡ଼ିଥିବା ଗୋଟିଏ ହଜ ଫୁଟିଲ୍ ମୁହିଁ ନିହିଦରେ ଓଦା ଘୁଡ଼ୁବୁଡ଼ୁ ହୋଇ ଚେ ନୁଗାର ଓଢ଼ଣୀ ତଳେ ଦିନକୁ ଦିନ ବେଶି ବେଶି ଝାଉଁଳି ପଡ଼ୁଚ, ସଂଜବୁଡେ ମା' ବୃଂଦାବଟୀ କଠ ରେ ଲେଗି ହୋଇ ସଜବତି ରଖିଦେଇ କେତେ କ'ଣ ଗୁଣୁଗୁଣୁ ହୋଇ ସେ କାହା ପାଇଁ କ'ଣ ମନାସିଯାଉଚ। ସେ ଘ୍ରାକଦାଦରେ ଭାଳିବାଳେଇ ଉଠେ, "ହଁ ମୁଁ ଅଛି, ଅଛି। ମୁଁ ଯାଉଚି, ଯାଉଚି।" ଆଉର କିଏ ବା ସ୍ୱପ୍ନ ଦେଖେ, ଗୋଟେ ଅଂଚଳପେଟିଆ, ସିଂଧାକୋକିଆ ଅଂଧ ଝିଲା ··ପେଟରେ ପିଲେହି, ହାଦରେ ଜର, ଗୋଡ଼ ତଳେ ପା' ଦି'ଟା ଫଲିଗଲାଣି। ସେ ତାକୁ ଧରିବା ପାଇଁ ହାତ ବଢ଼ାଏ। ପଥର ପର ଟାଣ ଛାଟା କାଂଥରେ ତା'ର ଝାଇବ ହାତ କହୁଣିଟା ଖୁବ୍ ଜୋରରେ ବାଜେଇ ହେଇଯାଏ। ମେ ଯଂତ୍ରଣାରେ ନିଦରେ ଚିତ୍କାର କରିଉଠେ। ଉପରେ ଚେମିଚି ଚନ୍ଦେକଗୁଡାକ ଚେଁ ଚେଁ କରି ତାକୁ ଏଡ଼େଇ ହୋଇ ମିଶଂଥ। ବଡ଼ା ପାଖ ମୁଖର୍ଜି ପ ହୋବ ବାହରେ ଦୁଷ୍ଟ ଦୁଆଟା ବାଡ଼ିଛେଟରର ସୁଗ୍ରାନ୍ ପାଇ ଜୁହା ସଂକୁଳ ଭିତରୁ ତାଂକ ଘର ଓଡ଼ିଆ ଦୁକର ଟମାକୁ ଡାକ ପକାଏ—

"ଓ ରାମା ଉଡ଼େ, ଉଡ଼େ ରାମା ! କ ତ୍ ତୁ ତୁ ତୁ।

... ... ... ...

ସେଦିନ ସଂଜବୁଢେ ମେଘୁଆ ହୋଇଥାଏ । ସହଲ ସହଲ ଯିଏ ଯୁଆଡ଼ୁ କାମରୁ ଫେରିଆସି ଘର ଭିତରେ ବସି ଦୁଃଖସୁଖ ହଉଥିଲେ । ଧୋକଡ଼ିଆ ବଗନର ମିଶ ବାଡ଼ିରେ କାମ କରୁଥିବା ମାଗୁଣିଆ ଘରପାଖକୁ ଯାଇଥିଲା । ସେ ସମସ୍ତିଂକ ଘର ଭିଷା···ଭଲ ମଂଦ ଖବର, ନିର୍ମାଲ୍ୟ କଣିକା, ଗାଁ ଦେବତାଂକ ଧଂଡା, ଆଉର ସବୁ କେତେ କ'ଣ ଧରି ଫେରିବ । ସମସ୍ତେ ଏକଜୁଟ ହୋଇ ମାଗୁଣିଆ କଥରୁ ଗାଁର ହାନିଲାଭ ବୁଝୁଥିଲେ । ପିଂଡାରେ ଗୋଟାଏ ଜଳାଂତା ଚୁଲିରେ ଗୋ'ଟାଏ ବଡ଼ ନାହା ବାଲ୍ଟିରେ କେଇଖଂଡ ମଇଳା ଲୁଗା ସୋଡ଼ା ଆଉ ସାବୁନ ପାଣିରେ ସିଜୁଥିଲା ସକାଳେ କଚ୍ରା ହବ ବୋଲି । କୋଉଠି ଲୁଗାର ଆଇଁଷିଣିଆ ତେଲିଆ ଗଂଧ ଘରଭିତରକୁ ପଶିଆସୁଥିଲା ମେଘୁଆ ପବନ ସାଥିରେ ଦରଆଉଜା କବାଟଟାକୁ ଠେଲିଦେଇ ।

ଏବର୍ଷ ଖେତ କେମିତି ହୋଇଚି, ଏଥୁ ଗାଆଁ ମେଳଣକୁ କେମିତି 'ଆରଂଭ'ରେ ସଲଟଣ ବାହାରିଲା, ରାମଲ୍ଲା ଯାତ ସଇଲାଣି କି ନାହିଁ, ଝଣିଜେନା ବାପ ଶୁଧକୁ କେତେ ମୂର୍ତ୍ତି ବ୍ରାହ୍ମଣ ଗୋସେଇଁ ଚୂଡ଼ାଦହି ଖାଇ ଅସିଥିଲେ, ଗୋବର ନଈ କମିତି 'ଦୁର୍ବଳ' ହୋଇ ବଢି ଘର ଦୁଆର ଭସେଇ ନଉଚି ଇତ୍ୟାଦି ପ୍ରଶ୍ନର ଉତ୍ତର ଦେଇ ସାରିବା ପରେ ପରେ ମାଗୁଣିଆ ପଚାରିଲା—କୁଂଜିଆ ଭାଇ କାହିଁ କି ? ତା ଖରିଯା ଗଉଣିଟା ଶୁଖି ଶୁଖି କଂଟା ହୋଇଗଲାଣି । ମୋ ହାତରେ ଖବର ଦେଇଚି ଏଥୁ ମାଣ ବଡାକୁ ନଚେ କିଛୁ ଟଂକା ପଇସା ନେଇ ଘରକୁ ଯିବାକୁ ।

ମୁରୁକି ହସି ଅଗାଧୁ କହିଲା—ଦାନଯାକ ସିନା କୁଂଜିଆ ଭାଇ ଆମ କଥରେ ଥାଏ, ରାତି ହେଲେ ତା' ଓଡ଼ କ'ଣ କଏ ପାଉଚି ? କାଲି ଦେଖିଲି, ହଡ୍ରା ଟଂକାରୁ ଭଲ ରେଶମୀ କାଚ ମୁଠାଏ କିଣି ଗାମୁଛା ତଳେ ଲୁଚେଇ କୁଆଡ଼େ ସଂଜବୁଡ଼େ ଯାଉଥିଲା ।

ଅପଡିଆ ଅଖି ଠାରି କହିଲା—ତମେ କ'ଣ ଜାଣିନା କି ଅଗାଧୁ ଭାଇ, ସେ ପରା ଝାମାପୁକୁର ଗଳିରେ ଗୋଟାଏ ଓଡ଼ିଆଣୀ ଖାନକି ପାଲିରେ ପଡ଼ିଲାଣି । ରୋଜ ସେ ରାଂଡିଟା ପାଖକୁ ନ ଗଲେ ଆଜିକାଲି ଆଉ ତା'ର ଭାତ ହଜମ ହଉନାହିଁ ।

ଘରଆଡ଼େ ଗୋଟାଏ ଘରଫଟା ହୋ ହୋ ହସର ଧ୍ୱନି ଉଠିଲା ।

... ... ... ...

ଠିକ୍ ସେତିକବେଳେ ଝାମାପୁକୁର ଭିତରୁ ଯେଉଁ ସଂଡସଂଢିଆ ଗଳିଟା ଯାଇ କର୍ଣ୍ଣଓ୍ୱାଲିସ୍ ଷ୍ଟ୍ରିଟ୍‌ର ଟ୍ରାମଷ୍ଟାଂଡ ପାଖେ ଠେଠେଣିଆ କାଳିଂକଠାରେ ବାହାରିଚି,

ତାର ଭିତରେ ଗୋଟାଏ ଭଂଗା ଟିଣଘର ଭିତରେ କୁଂଜଆ ତା ଗ୍ରୁଢ ଉପରେ ରାଧିକୁ ଆଉଜାଇ ତା କାନ ପାଖରେ କହୁଥିଲା—

ଠାକୁରଂକ ଦେହ ଦେଇ କହୁଚି, ତତେ ଦେଖିଲେ ମୋର ଖାଲି ଗଉରୀ କଥା ମନେ ପଡ଼େ । ତୋ ମୁହଁଟି ଦେଖିବାକୁ ଠିକ୍ ତାର ମୁହଁ ପରି, ସେମିତି ଡଉଲଡାଉଲ, ସେମିତି ମାଉଁସିଆ । ତା ଓଠ ଦଳ୍ହଟା ଠିକ ତୋର ଓଠ ପରି ଏମିତି ନୁଆଣିଆ । ତୁ ହସିଲାବେଳେ ମୁଁ ଭାବେ ଗଉରୀ ହସୁଚି । ସେଥିପାଇଁ ତୋ କଡରେ ଥିବାବେଳେ ମୁଁ ତା'ର ଅଭାବ ଭୁଲିଯାଏ । ମୋର ମନେହୁଏ ତୁ ଯେମିତି ଗଉରୀର ଠିକ୍ ଅବିକଳ ନକଲ । ସେଇଥିପାଇଁ ତ ମୁଁ ସବୁ କାମଦାମ ଛାଡ଼ି ତୋ କଡକୁ ଦଉଡ଼ି ଆସେ ।

ସେ ଖେଁ ଖେଁ ହେଇ ଗୁଡ଼ାଏ ହସିଲା । ମଇଳା କବ୍‌ସିନ ଆଲୁଅରେ ରାଧିର ଉଚା ଗ୍ରୁଢଟା ପଡ଼ୁଥିଲା ଉଠୁଥିଲା । ସେ ବାଁରେଇ କଥାର ମୋଡ଼ ଫେରାଇବାକୁ କହିଲା – ଗଉରୀକୁ ତ ଏତେ ଦେଖିପାର ତେମେ, ସବୁ ହପ୍ତା ଟଂକା ତ ଏଥର ମୋ ପିଛୁ ଖର୍ଚ୍ଚ କରାଉକାଇଲ, ତା ପାଖକୁ ପଠାଇବ କ'ଣ ?

ଖଟତଳେ ଜମିଥିବା ଗୁଡ଼ାଏ ଭଂଗା ମଦ ବୋତଲ ଆଡ଼କୁ ଅନାଇ କୁଂଜଆ ବସି ରହିଲା । ତା ମୁହଁଟା ହଠାତ୍ ପାଉଁଶିଆ ପଡ଼ିଗଲା । ସେ ଉଦାସ କଂଠରେ କହିଲା—ହଁ, ସତେ ତ, ସବୁ ତ ତେତେ ଦେଇଗଲି, ଘରକୁ ଫେର୍ ପଠାଇବି କ'ଣ ? ତା କଂଠସ୍ୱରରୁ ଜଣା ପଡ଼ୁଥିଲା ସେ ଯେମିତି ଭାରି ହାଲିଆ ହେଇଯାଇଚି ।

ରାଧି ଟିକିଏ ଅଭିମାନ କରି କହିଲା—ମତେ ଟଂକା ଦେଇ ତମର ଭାରି ଅବଶୋଷ ହଉଚି, ନା ? ଦରକାର ନାହିଁ ମୋର ତମ ଟଂକାରେ । ଫେରାଇନିଅ । ମୁଁ ତମର କିଏ ଯେ—

କୁଂଜଆ ବ୍ୟସ୍ତ ହୋଇ କହିଲା—ତୁ କ'ଣ ମୋ ଉପରେ ରାଗିଲୁ ରାଧି ? ମୁଁ କ'ଣ ଟଂକା ତତେ ମାଗୁଚି ? ମୁହଁ ଛୁଂଚୁଡ଼ି ରାଧି କହିଲା, ମାଗିଲେ କ'ଣ ଗୋଟା ଦେଶି ହେଇଥାଂତା ? ତମ ମନ ଯେବେ ମାନୁନାହିଁ, ମୁଁ କ'ଣ ତମକୁ ଦିଅ ଦିଅ ବୋଲି ଜବରଦସ୍ତି କରୁଚି କି ?

କୁଂଜିଆ କଥାଟାକୁ ବାଆଁରେଇ ଦବା ନାଗି କହିଲା – ଛି ! ମୋ ଉପରେ ତୁ ପୁଣି ଗୋଟା ରାଗ ଲେଖୁଚୁ ରାଧି ? ହଁ, ତମ ମାଇପି ଜାତଟା ଏମିତି ! ଗଉରୀଟା ବି ରାଗିଲା ବେଳେ ତୋରି ପରି ଠିକ୍ ଏମିତି ମୁହଁ ବୁଲେଇ ନେଇ ଫୋପାଡ଼ିଲା ପରି କଥାଗୁଡ଼ା କହେ । ତୁ ରାଗିକରି କଥା କହୁଲେ ମୋ ଆଖିରେ ଗଉରୀର ଛଇଛଟାଗୁଡ଼ାକ କେଜାଣି କିଆଁ ନାଚଯାଏ । ଥରେ ଗୋଟାଏ ଯାତରୁ ମତେ

ଉପଖଣ୍ଡ, ଦି'ପଟ ଆଣିବାକୁ ଲାଗି ସେ ବନ୍ଧକ ଦେଇଥିଲା । ମୁଁ ଚଣ୍ଡାଳ କଲି କଣ ନା ଜୁଆ ଖେଳୁ ଖେଳୁ ସବୁତକ ପଇସା ଉଜାଡ଼ିଦେଇ ଶୁଖିଲା ହାତରେ ଘରକୁ ଫେରିଆସିଲି । ସେ ଧନଯାକ ଦେଖି ତା'ର ରୁଷା; ଦି'ଦିନ ଯାଏ ଜମାରୁ ଭଲରେ କଥା କହିଲା ନାହିଁ । ଠିକ୍ ତୋରି ପରି ଇମିତି ମୁହଁ ଫୁଲେଇ ବସିରହିଲା । ଯେତେ ଗୁଣନସ୍ତମ ପକେଇଲେ ଜମାରୁ ଚଂକିଲା ନାହିଁ । ନିହାତି ଦରକାର ପଡ଼ିଲେ କାଂଥକୁ ବାଡ଼କୁ କହିଲା ପରି ଯାହା ଦି ଚାରି ପଦ କଥା ମୋତେ ଶୁଣାଇ ଶୁଣାଇ ଦୂରରୁ କହି ଦେଇଥିଲା ସେତିକି । ତୋ ରାଗ ଦେଖି ମୋର ସେଇ କଥା ମନେ ପଡ଼ି-ଯାଉଛି ।

ବିରକ୍ତ ହୋଇ ରାଧି କହିଲା ସବୁବେଳେ ଖାଲି ଗଉରୀ, ଗଉରୀ, ଗଉରୀ ! ଆଉ ଯେମିତି ଦୁନିଆରେ କିଛି କଥା ନାହିଁ ! ତାର କଥାଗୁଡ଼ାକ ମୋ' ପାଖରେ ଏତେ ବକର ବକର ହଉଥ କିଆଁ ? ଛିହ୍ନରେ ନିଆଁ ଟେଂଗିଲା ପରି ନାଗେ । ଯାଉନ ତେମେ ତମେ ଗଉରୀ ପାଖକୁ । କେଇଥର କହିଚ, ମୁଁ ଗଉରୀ ନୁହି, ମୁଁ ରାଧି, ମୁଁ ରାଧି, ମୁଁ ରାଧି ।

ତା'ପରେ ଟିକଏ ଗ୍ରୁଡ଼ି କହିଲା—ହଉ, ତମେ ଯା ଏଥର । ଏଇନାଗେ ସେ ମଦୁଆ ପଠାଣ ବାଣ୍ଡପଡ଼ା ଆସିବ ତ ମୋ ଚୂଟି ରହିବ ନାହିଁ । ତମକୁ ମୋ ଘରେ ଦେଖି ମୋତେ ପରା ହାତ ଉଠାଇ ମାଇଲା ।

ରାଧି ମୁହଁ ଫୁଲେଇ ଶୋଇ ରହିଲା ।

... ... ... ...

ରାଧି କତରୁ ଗାଳି ଖାଇ ଅପରାଧୀଂକ ଭଳିଆ କୁଂଜିଆ ହେଠୁ ବାହାରି ଆସିଲା । ବାହାରେ ଠଣଠଣିଆ କାଳୀ ମଂଦିରରେ ସଂଜ ଘଂଟି ବାଜୁଥିଲା । କୁଂଜିଆର ମନେ ପଡ଼ିଲା, ଏଇନାଗେ ତା ଗାଆଁ ଠାକୁରାଣୀ ଚକଡ଼ାରେ ଆଳତି ହଉଥିବ, ଗଉରୀ ବିଚାରୀ ବୋଧହୁଏ ନୁଗା କାନିଟାକୁ ବେକରେ ଗୁଡ଼ାଇ ମା ବୃଂଦାବତୀଂକ ଚଉରା ମୂଳରେ ସଂଜବତି ଥୋଇଦେଇ ଓଳଗି ହଉଥିବ । ତା ଆଖି ଦି'ଟାରେ ନୁହ ଉତୁରି ଆସିଲା ।

ଆଗତ ସାଲେ ଖେତ ମରିଯିବାରୁ କୁଂଜିଆ ଭୁଆସୁଣୀ ଖରଯାକୁ ଘରେ ଛାଡ଼ିଦେଇ କଲିକତା ଆସିଥିଲା । ତା'ର ଆଶା ଥିଲା ବର୍ଷେ ଗୋଟାକରେ କିଛି ଟଂକା ପଇସା ଜମେଇ ସେ ପୁଣି ଖେତଉଜୁଡ଼ା ବେଳକୁ ଘଠିକି ଫେରିବ;କିନ୍ତୁ ଦୁଇବର୍ଷ ବିତି-ଗଲାଣି । କୁଂଜିଆ ଗାଆଁକୁ ଫେରି ପାରୁନାହିଁ । ଗତ ସାଲେ ଟଂକା ପଇସା ଅଭାବ,ଏ ସାଲେ ଛୁଟି ମିଳିଲା ନାହିଁ । ଘର ବାହୁଡ଼ା ଚଢ଼େଇ ବାଟରେ ଅଟକି ଗଲାପରି ତା' ମନଟା ଏଠି ଏକରକମ ଚୂନଚୂନା ହୋଇଗଲାଣି । ଦିନସାରା ନୁହା ରେଲର ଟାଣି,

ରାସ୍ତାର ମାଂକଡ଼ା ପଥର ସାଥିରେ ତା'ର ସାବଳିଆ ବାହା ଦି'ଟାକୁ ପଥୁରିଆ କରି ସେ ସଞ୍ଜବୁଡ଼େ ହାଲିଆ ହୋଇ ବସାକୁ ଫେରି ଆସି ଗଉରୀ କଥା, ଆଉ ତା ଗାଁ କଥା ଭାବି ଭାବି ଶୋଇପଡ଼େ । ସେତିକି ହିଁ ଥିଲା ତା'ର ଝୋଲମରା ଘୋଡ଼ରା ଜୀବନ ଭିତରେ ଏକମାତ୍ର ଆନଂଦ ।

ଅନେକ ଦିନ ତଳେ, ଆଜିକି ଚୈତ୍ରମାସ ହେବ ନା କ'ଣ, ଝାମାପୁକୁର ଗଳିରେ ଖଂଡେ ରାସ୍ତା ମରାମତି ହେଉଥିଲା । କୁଂଜିଆ ଝାଳ ସୁଡ଼ୁବୁଡ଼ୁ ହୋଇ ରୋଲର ଟାଣୁ ଟାଣୁ ଦେଖିଲା, ରାସ୍ତା କଡ଼ରେ ଗୋଟିଏ ଭଂଗା ଟିଣଘର ପିଂଡାରେ ବସି ରାଧି ଝରିରେ ବାଳ ଶୁଖାଉଛି ଆଉ ଖଂଡେ ପିଂକା ଟାଣୁଛି । କୁଂଜିଆ ଟିକିଏ ଠିଆହୋଇ ତା' ଆଡ଼କୁ ଅନେଇଲା । ତା'ର ମନେହେଲା ଗଉରୀର ଗୋରା ମୁହଁଟିକୁ କିଏ ଯେମିତି କାଟି ଆଣି ରାଧି କାଂଧରେ ଲଗେଇ ଦେଇଛି । ସେ ଭାବିଲା, ଗଉରୀ କ'ଣ ଆଉ ସତରେ ଫେରିଆସିଛି କି ! ତାକୁ ଅନ୍ୟମନସ୍କ ଭାବରେ ପଥରେ ସ୍ଥିର ରହିବାର ଦେଖି ସାଂଗ ଭାଇମାନେ ତାକୁ ପଛଆଡ଼ୁ ଠେଲିଦେଇ ପାଟିକରି ଉଠିଲେ—

ହେ ଲେ ସା

କୁଂଜିଆ ହୋସ୍ ପାଇ ଫେର୍ ରୋଲର୍ ଟାଣିବାକୁ ଲାଗିଲା । ରାସ୍ତା'ର କଂକ୍ରି କଂକିଟ୍ ଗୁଡ଼ାକୁ ଚୂନା କରି ଲୁହା ର ରୋଲର ଆଗେଇ ଚାଲିବାକୁ ଲାଗିଲା ।

× × ×

ସେଇ ଦିନ ସଞ୍ଜବୁଡ଼େ କୁଂଜିଆ ବସାକୁ ଫେରି ଧୁଆଧୋଇ ହୋଇ, ସଫା ଲୁଗାପଟା ପିଂଧି, ପ୍ରାୟ ଦି'ବର୍ଷ ପରେ ଏଇ ପହିଲି ଥର ଫେଟରେଇ କାଟି ରାଧି ସାଂଗେ ଯାଇ ଚିହ୍ନାପରିଚ ହୋଇଆସିଲା । ସେ ରାଧିଠୁଁ ବୁଝିଲା, ଘର ତା'ର ଜଳେଶ୍ୱରରେ । ତାକୁ ଜଣେ କିଏ ଗିରସ୍ତ ପାଖରୁ ଭୁଲେଇ ଆଣି କଲିକତାରେ ଛାଡ଼ିଦେଇ ଯାଇଛି ।

ସେଇଦିନୁ କୁଂଜିଆ ରାଧି ଭିତରେ ତା'ର ହଜିଲା ଗଉରୀକୁ ଫେରିପାଇଛି । ଦିନସାରାକର ହାଡ଼ଭଂଗା ମେହନ୍ତ ପରେ ତା'ର ଯେତେବେଳେ ଗଉରୀ କଥା ମନେ ପଡ଼ି ମନଟା କାନ୍ଦି ଉଠେ, ଆଖି ପତା ଦି'ଟା ଲୁହରେ ଛଳ ଛଳ ହୋଇ ଆସେ, ସେତିକିବେଳେ ସେ ରାଧି କତିକୁ ଦୌଡ଼ିଯାଏ । ତା' ଦୁଆରେ ଧକ୍କା ମାରି ଡାକେ—ରାଧି, ରାଧି, ମୁଁ ଆଇଛି ।

କୁଂଜିଆର ଲୁହା ରୋଲର ପରି ଭାରି ଜୀବନଟା ଅନବରତ ପାଂକ, କାଦୁଅ, ଗୋଡ଼ି, ପଥର ମାଡ଼ି ଘୂସୁରି ଘୂସୁରି ଚାଲି ଶେଷରେ ଦୁଇବର୍ଷ ପରେ ଖୋଜି ପାଇଛି ଟିକେ ଦମ୍ ମାରିବାର ଥାନ — ଟିକିଏ ଛାଇ ! ! ହୋଇପାରେ ସେଟା ଖାଲି ଛାଇ,

ତୁଚ୍ଛା ମିଛ, ହେଲେ ତା'ର ସେଥିରେ ଯାଏ ଆସେ କ'ଣ ? ଅକାମରୁ ବାଟୋଇର ଭାଂଗା ମନ ପରି ତା'ର ସବୁ କଥା ଏତେ ମ ପିଚୁପି ବାହାର କରିବାକୁ ବେଳ କାହିଁ ?

କେତୋଦିନ ଗଲା । ସେଦିନ କୁଂଜିଆ ରାଧି ଦୁଆର ମୁହଁରେ ପହଂଚି ଦେଖିଲା, ଭିତରପଟୁ କବାଟ କିଳା ହୋଇଚି । ସେ ଭାବିଲା ସରଫ୍ ବୋଲି ଯେଉଁ ମୁସଲମାନ ଡ୍ରାଇଭରଟା ରାଧି କତିକୁ ଯା'ଆସ କରେ, ସେଇ ବୋଧହୁଏ ଭିତରେ ଅଛି ନା କ'ଣ ? ସେ ଫେରିଆସୁଥିଲା । କିନ୍ତୁ ଝର୍କା ବାଟେ ତା'କୁ ଦେଖିପାରି ରାଧି ଭିତରକୁ ଯିବାଲାଗି ଇସରା କଲା । ନିଜେ ଆସି କବାଟ ଫିଟେଇ ଦେଇ ତା ହାତ ଧରି ଘର ଭିତରକୁ ନେଇଗଲା ।

ମିଂଝିମିଂଝି ଧୂଆଁଳିଆ କିରାସିନି ଆଲୁଅରେ କୁଂଜିଆ ଦେଖିଲା, ରାଧି କାଂଦୁଛି ।

କୁଂଜିଆ ଗିର୍ଣ ନିଘୁମ ଦେଇ ବହୁତ ଫଟେଇ ଫଟେଇ ବୁଝିଲା ଯେ ସେଇ ମଟରଡ୍ରାଇଭରଟା ରାଧିକୁ ମଦ ଖାଇବାକୁ ପଇସା ମାଗିଲା । ରାଧି ନ ଦବାରୁ ତାକୁ ଗୋଟା ଭାଂଗା ମଦ ବୋତଲ ଖଟ ତଳୁ ଉଠେଇ ନେଇ ପିଟିଲା । ସେ ଦେଖିପାରିଲା ରାଧିର ବାଂଇବି ହାତଟା କାଚ ବାଜି ଫାଂଟିଆ ହୋଇଯାଇଚି । କୁଂଜିଆ ଘରର ଚାରିଆଡ଼କୁ କଟମଟ କରି ଅନେଇଲା । ଦେଖିଲା, କାଂଥରେ ଗୋଟା ମଇଳା ଚିରା ଅଧା ପଂଜାବୀ ଝୁଲୁଚି । ସେ ପଂଜାବୀ ଦେହରେ କୋଉ କାଳର ପୁରୁଣା ରକ୍ତ ଦାଗ କଳା କଳା ହୋଇ ଦେଖା ଯାଉଚି । ଠାଏ ଠା'ଠା ଅଣହୁସିଆରରେ ବିଡ଼ି ଖାଉ ଖାଉ ନିଆଁ ଝି ଝି ବାଜି ଚେକା ଚେକା ହୋଇ କସରା ପଡ଼ିଯାଇଚି । କୁଂଜିଆ ଭାବିଲା, ସେ ଦୌଡ଼ିଯାଇ ସେ କୁର୍ତ୍ତାଟାକୁ ଦାଂତରେ ଚିରି ଛିନ୍ ଛିନ୍ କରିପକାଇବ । ସେ ପଂଜାବୀଟା ଯେ ସେଇ ଡ୍ରାଇଭରର ଏ କଥା ଠଉରେଇ ନବାକୁ ତାକୁ ବେଶି ବେଳ ଲାଗିଲା ନାହିଁ ।

ସେ ରାଗରେ ଦାଂତ କାମୁଡ଼ି ପଚାରିଲା—କାହିଁକି ତୁ ସେ ମାତାଲଟାକୁ ଏଠିକି ଆସିବାକୁ ଦଉ ? ତୋର କ'ଣ ମାନ ଇଜ୍ଜତକୁ ନିଘା ନାହିଁ ?

କୁଂଜିଆଠୁ ଟିକିଏ ଦରଦମିଶା କଥା ଶୁଣି ରାଧି କହିଁ କହିଁ ହୋଇ କାଂଦି ଉଠିଲା । ତାକୁ ତାର ଭୁଲଗୁଡ଼ାକ ଦେଖାଇ ତା' ଉପରେ ବିରକ୍ତ ହବାପାଇଁ—ତା ଦୁଃଖରେ ଟିକିଏ ଗରମ ସହାନୁଭୂତି ଦେଖେଇ ତାକୁ ଦବୁ କଥାରେ ପିଲାଂକ ପରି ଗାଳି ମଂଦ ଦେଇ ଆଦର କରିବା ଲାଗି ସେ ଯେମିତି ବହୁଦିନ ପରେ ଆଜି ଦୁନିଆ ଭିତରେ ଜଣେ ଲୋକ ପାଇଲା । ତା' ପେଟ ଭିତରର ସଢ଼ିଲା ଦୁଃଖ ଗୁଡ଼ାକ ଆଜି କୋରଡ଼ ବାଟେ ଉଛୁଳି ଆସିଲା । ସେ କୁଂଜିଆ ଛାତିରେ ମୁହଁ ଲୁଚେଇ କହିଁ କହିଁ ହୋଇ କହିଲା—ସବୁଦିନେ ସେ ମୋତେ ଖାଲି ପଇସା ମାଗେ । ମୁଁ ନ

ଦେଲେ ସେକ ମତେ ହାତ ଉଠେଇ ମାରେ । ମୋର ଗହଣା ପତର ହେଇ ଯାହା ବଳିଷ୍ଠ ଥିଲା, ସବୁ ମତେ ମ ଡ଼ ଫୋଜତ ଦେଇ ସେ ମୋଠୁ କୋଉଦିନୁ ଛଡ଼େଇ ନେଇ ମଦ ଖାଇ ସାରିଲଣି । ଦିନେ ଦିନେ ମୋ ହାତରେ ପଇସାପଇ ନଥିଲେ ମୁଁ ତାକୁ ନାହିଁ କରିଦିଏ । ସେ କ'ଣ ଛାଡ଼ିବା ଜଂତୁ ? ସେ ମୋ ବାକ୍ସ ପେଟରା ଭାଂଗି ଯାହା ଯୋଉଠି ଥାଏ, ସବୁ ଜବରଦସ୍ତି କରି ନେଇଯାଏ । ମନାକଲେ ମାଡ଼, ଗାଳି, ଗୋଇଠା । ମତେ ଛଅଭିତରେ ପଚିଶଥର ମାରିସାରିବଣି ।

ପଚିଶ ଥର ? ତୁ ମତେ ଆଜଯାଏ ଏକଥା କହିନାହୁଁ କାହିଁ ? ମୁଁ ସେ ବଦମାସଟାର ଖୁନ୍ ନକାଲି ଦିଅଂତିଣି । ରାଗରେ କୁଂଜିଆ କହିଲା ।

ରାଧି କିଛି କହିଲା ନାହିଁ, ତଳକୁ ମୁହଁ ପୋତି ରହିଲା ।

ଏଭଳି ଗୋଟାଏ ଲୋକକୁ ରାଧି ବାହିଁଲା ଘରେ ମୁଣ୍ଡିଏ କୁଂଜିଆ ଜମା କିଛି ବୁଝିପାରିଲା ନାହିଁ । ସେ ଜାଣିଥିଲା, ବେଶ୍ୟାମାନେ ପଇସାପାଇଁ ବେଉସା କରଂତି । କଂତୁ ରାଧି ପାଖରେ ଦୁସୁରି କଥା ଦେଖି ସେ ତାଜୁବ୍ ହେଇଗଲା, ଖାଲି ବଲବଲ କରି ମୁହଁକୁ ଅନେଇ ରହିଲା । ତା'ପରେ ଖଟତଳେ ପଡ଼ିଥିବା ପୋଡ଼ା ଝଂକଆ ବଡ଼ିଗୁଡ଼ାକୁ ଗୋଡ଼ ବୁଢ଼ା ଆଂଗୁଠିରେ ଅନ୍ୟମନସ୍କ ହେଇ ଦଳିବାକୁ ଲାଗିଲା ।

ଝୋଲା ଝରକାବାଟେ ରାସ୍ତାର ଗ୍ୟାସ୍ ଅଲୁଅ ଆସି ରାଧିର ମଇଳା ବିଛଣାକୁ ଉଜାଲା କରି ଦେଇ ଯାଉଥିଲା ।

ବାହାରେ ଝିପି ଝିପି ହୋଇ ବର୍ଷା ପଡ଼ିଲା । ଟିଣ ଘର ଉପରେ ସାନ ସାନ ବର୍ଷା ଟୋପାଗୁଡ଼ାକ ବେଶ୍ ଗୋଟାଏ ନିଦ ନଗା ନଗା ଅଳସ ମିଶା ଆବାଜ ସୃଷ୍ଟି କରିବାକୁ ଲଗିଲେ । ସେଇ ଆଡ଼କୁ କେତେବେଳ ପର୍ଯ୍ୟଂତ କାନ ପାତି କୁଂଜିଆ କହିଲା—ଏମିତି ବର୍ଷାଦିନେ ଗଉଣୀ କ'ଣ କରେ ଜାଣୁ ? ସେ ରଂଧାବଢ଼ା ସାରି ଆସି ମୋ ପାଖେ ବସେ । କହେ, ତମେ ଶୋଇପଡ଼, ମୁଁ ତମ ମୁଂଡ ଉପରେ ବସି ସାରା ରାତି ଚେଇଁ ରହିବି । ମୁଁ କହେ, ନା, ନା, ତୁ ଶୋଇପଡ଼, ମୁଁ ତୋ ମୁଂଡ଼ ଉପରେ ବସି ସାରା ରାତି ଚେଇଁ ରହିବି । ଶେଷରେ କେହି ଶୋଇପାରୁନା, ଖାଲି ପାଣିଂଆ ଅଂଧାର ଆଡ଼କୁ ଚାହିଁ ବାହିଁକି ଦିହେଁ ସେମିତି ଚୁପ୍‌ଚାପ୍ ବସିରହୁ ।

ରାଧି ଗଂଭୀର ହୋଇଗଲା । ତଥାପି ବାହାରେ ଟିକିଏ ହସିବାର ଛଳନା କରି କହିଲା—ମୁଁ ତ ଆଉ ଗଉଣୀ ନୁହେଁ !

କୁଂଜିଆ କହିଲା—ନୋହୁ ସତ, କଂତୁ ତତେ ଦେଖିଲେ ମୋର କାହିଁକି ମନେହୁଏ ଯେ ତୁ ରାଧି ନୋହୁ—ତୁ ଗଉଣୀ । ତୋ ମୁହଁଟି, ଆଖି ଯୋଡ଼ିକ, ହସ

ଗୃହାଣି ସବୁ ଅବିକଳ ତାର ପରି, ଏତେ ଠିକେ ବି ତଫାତ୍ ନାହିଁ କେଉଁଠି । ତତେ ଦେଖିଲେ ମୁଁ ସତକୁ ସତ ଗଉରୀକୁ ଭୁଲିଯାଏ ।

ରାଧି ଅଭିମାନ କରି କହିଲା, ଓଃ, ସେଇଥିପେଇଁ ତମେ ବୋଧେ ମୋ କତକି ଆସ—ନା ? ମୋ ଚେହେରାଟା ଦେଖିବାକୁ ଗଉରୀ ପରି ହେଇ ନ ଥିଲେ ତମେ ବୋଧେ ମୋ କତକ ଆସୁ ନ ଥାʼନ୍ତ ଜମା—ନା ?

କୁଂଜଆ ଏତେ ଗମ୍ଭୀର କଥା ଭିତରକୁ ପଶିପାରେ ନାହିଁ । ସେ କʼଣ ଉତ୍ତର ଦବ କିଛି ହମସ୍ତିଯାଏ ଠିକ କରିପାରିଲା ନାହିଁ । ଶେଷରେ କହିଲା—ନା ।

ଦୁଃଖରେ, ଈର୍ଷାରେ ରାଧିର ମୁହଁଟା ଫିକା ପଡ଼ିଗଲା । ସେ କିଛିକ୍ଷଣ ଚୁପ୍ ହୋଇ ରହି କହିଲା, କାହିଁକି, ମୋର କʼଣ ତାʼହେଲେ ନିଜର କିଛି ଦାମ ଦାମ ନାହିଁ ? ମୁଁ କʼଣ ଗୋଟାଏ ଅଲଗା ମଣିଷ ନୁହି ? ମୋର କʼଣ ନିଜର ତାʼହେଲେ ଅଲଗା ହେଇ କିଛି ଗୋଟାଏ ଜିନଷ ନାହିଁ ?

କୁଂଜଆ ବୁଝିପାରିଲା, ରାଧି କʼଣ ଗୋଟା ବଡ଼ ଖାଂଟି କଥା କହୁଚି । କିଂରୁ ତା କଥାରୁ ସେ କିଛି ଭଲକରି ବୁଝିପାରିଲା ନାହିଁ । ସେ କଥାଟକୁ ବାଆଁ ରେଇ ଦବାନାଗି କହିଲା—ନା, ନା, ମୁଁ ସେମିତ କହୁଥିଲି ନା !

ରାଧି ଗଂଭୀର ହେଇ କହିଲା—ମୁଁ ତମକୁ ପହିଲୁ ଦେଖିଲାଦନୁ ତମ ମୁହଁରୁ ଖାଲି ଗଉରୀ ଛଡ଼ା ଅନ୍ୟ କିଛି କଥା ଶୁଣିନାହିଁ । ତମେ ମତେ ହଜାରଥର କହିଚ ଯେ ମୁଁ ଦେଖିବାକୁ କୁଆଡ଼େ ଠିକ୍ ଗଉରୀ ପରି ଆଉ ସେଇଥିପାଇଁ ତମେ ମୋ ପାଖକୁ ଆସ । ଏ କଥା କʼଣ ସତ ?

କୁଂଜଆ କେଂକାଂକ ପରି ମୁଂଡ ଆଉଁସୁ ଆଉଁସୁ ଜବାବ ଦେଲା—ହଁ, ସତ ! ମୁଁ ତତେ ଗଉରୀ ପରି ଆପଣାର ନୋକ ବୋଲି ଭାବେ ।

ରାଧି କହିଲା—ମୁଁ ତମକୁ କହିଦଉଚି, ମୁଁ ଗଉରୀର ଛାଇ ନୁହି । ମୁଁ ରାଧି । ମୁଁ କାହାର ନକଲ ନୁହିଁ । କାହାର ନକଲ ହବାକୁ ମୁଁ ଚାହେଁ ନାହିଁ ।

ରାଧି ଅଭିମାନରେ, ଅହଂକାରରେ ଫୁଲି ଉଠିଲା । ରାଧି ଯେ ବଂଚିଛି, ସେ ଯେ ଗୋଟା ସ୍ୱତଂତ୍ର ମଣିଷ, ଏଇ କଥାଟାକୁ ବଡ଼ ଜୋରରେ ତାʼର ଆହତ ନାରୀତ୍ୱ ଆଜ ଘୋଷଣା କରିବାକୁ ଚାହୁଁଥିଲା ସତେ କି ଅବା ! ଯେଉଁ ଶସ୍ତା ଦେହଟାକୁ ସେ ମାଉଁସ ଓଜନ କଲାପରି ବଜାରରେ ବିକିକରେ, ତାʼର ଭିତରୁ କିଏ ଯେମିତି ସତେ ପାଟିକରି ଉଠୁଥିଲା —ରାଧି···ରାଧି । ସେ କାହାର ନକଲ ନୁହି । ସେ ଗଉରୀ ବା ଅନ୍ୟ କାହାର ମୁଖା ପିଂଧି ତାର ଦସ୍ତାରୁ କୁଂଜଆଠୁ ସ୍ନେହ ସରାଗ ଭୁଲେଇ ନବାକୁ ଚାହେଁ-ନାହିଁ । ସେ ନିଜେ ଯାହା, ସେଇଥିପାଇଁ ଯେବେ କିଏ ତାକୁ ସୁଖ ନପାଇଲା,

ତେବେ ସେମିତି ସୁଖ ପାଇବାରେ ତା'ର ଦରକାର କ'ଣ ? ଗରଜ ପଡ଼ିଛି ତା'ର ସେମିତି ଲୋକଙ୍କଠିକି ଯାଇ ଯାଚିଗୁଞ୍ଜ ହୋଇ ପଶିବାକୁ ? ସେ କାହିଁକି ଅନ୍ୟଠୁ ଧାର ଆଣିଥିବା ଦରବରେ ଜଣଙ୍କୁ ଭୁଲେଇ ନେଇ ଥଇଥ ମଇଥ ହେବ ? ଛି ! ଛି !!

କୁଂକିଆ ଗାଥି କଥାଗୁଡ଼ାକ କମାରୁ କିଛି ବୁଝିପାରିଲା ନାହିଁ ।

× × ×

କିଛିଦିନ ପରେ କୁଂକିଆ ଯାଇ ଦେଖିଲା, ଗାଥି ଦୁଆରେ ଗୋଟାଏ ଟେକ୍ସି ଠିଆ ହୋଇଛି, ଆଉ ଗାଥି ଘରଭିତରେ ତା'ର ଜିନଷପତ୍ର ସଜାଡ଼ିବାରେ ଲାଗିଛି । ଟ୍ରଙ୍କ ବାକ୍ସ, ପେଟରା, ବିଛଣା ସବୁ ବନ୍ଧା ସରିଲାଣି ।

କୁଂକିଆ ଅବାକ୍ ହୋଇ ପଚାରିଲା—ଇଏ କଣ କରୁଛୁ ତୁ ?

ଗାଥି ବିଛଣା ଗୁଡ଼େଇ ସେଥିରେ ଦଉଡ଼ି ବାନ୍ଧୁ ବାନ୍ଧୁ ଜବାବ ଦେଲା—ମୁଁ ଶ୍ୟାମବଜାରକୁ ଉଠିଯାଉଛି । ସକେସ୍ ସେଠି ଗୋଟା ଘର ଭଡ଼ା ନେଇଛି, ଆମେ ଦୁହେଁ ସେଇଠି ଏକାଠି ରହିବୁଁ ।

କୁଂକିଆ କହିଲା—ତୁ ସେଇ ମାତାଲଟା ସାଂଗରେ ଯାଇ ରହିବୁ ? ତେବେ ସବୁ ସେ ଏତେ ମାର୍‌ପିଟ୍ କରେ, ତୋର ଗହଣାପତ୍ର ସବୁ ସେ ଛଡ଼େଇ ନେଇ ନିଜେ ଭାଂଗି ମଦ ଖାଇ ଦେଇଛି ? ତୁ ସେଇ ବଦମାସ୍‌ଟା ସାଂଗରେ···

ହଁ, ସେଇ ବଦମାସ୍‌ଟା ସାଂଗରେ ମୁଁ ରହିବି, ଗାଥି କହିଲା । ସେ ମାତାଲ୍, ମତେ ମାରଧର କରେ ମୁଁ ମାନୁଛି । କିନ୍ତୁ କାହିଁକି ସିଏ ମତେ ଇମିତି ମାରଧର କରିବାକୁ ସାହସ କରେ ? ମତେ ସେ ନିଜର ବୋଲି ଭାବୁ ନ ଥିଲେ ମୋ ଉପରେ ତାର କଣ ଏତେ ବଳ ପାଆନ୍ତା ? ପରଲୋକକୁ କିଏ କଅଣ କଥା ପଦେ ଠାଣି-କରି କହିବାକୁ ସାହସ କରେ ? ମୁଁ ଖାନକୀ, ମୁଁ ଦାଣ୍ଡଆଣ୍ଡୀ ସତ, କିନ୍ତୁ ତା ପାଖରେ ମୁଁ ଗୋଟାଏ ଜଅନ୍ତା ମଣିଷ । ଖାନକୀ ଗାଥି ବଂଚିଛି ବୋଲି ସେ ଜାଣେ । ସେଇଥିପାଇଁ ମୋର ଭୁଲ ଦେଖିଲେ ସେ ମୋ ଉପରକୁ ହାତ ଉଠାଏ ।

ତା'ପରେ ସେ ଦର୍ପଣ ସାମନାରେ ନିଜ ଶାଢ଼ିର ପିନ୍‌ଟାକୁ ଠିକ୍ କରୁ କରୁ କହିଲା, ତମ ପାଖରେ ମୁଁ ଗୋଟାଏ ଛାଇ, ଆଉ ଜଣକର ଭୂତ, ତାର ନକଲ ·· ମୁଁ ନିଜେ କେହି ନୁହଁ । ଏତେ ପର ବୋଲି ଭାବ ତମେ ମୋତେ ?

ତମେ ତ ଗାଥିକୁ ଭଲପାଅ ନାହିଁ । ତମେ ତା ଭିତରେ ଗଉରିକୁ ଭଲ-ପାଅ । ନୁହଁ ? ହୋଇପାରେ ଗଉରି ତମର ସତୀ ସାବିତ୍ରୀ, ଆଉ ହୋଇପାରେ ଗାଥି ବଜାରର ବେଶ୍ୟା । ହେଲେ, ମୁଁ ନିଜେ ଜଣେ କେହି, ଏ କଥା ତ ତମେ ବୁଝିଲ ନାହିଁ କମା ।

କୁଂଜିଆ କଣ ଜବାବ ଦବ ଚେଇକଥା ଭାବୁଥେଲା । ହଠାତ୍ ରାଧି କହିଲା—ବାହାରକୁ ଆସ, ମୁଁ ଘର ତାଲା ଦେଇ ଘରବାଲାକୁ ଚାବି ବୁଝେଇଦେବି ।

ରକ୍ସାବାଲା ଜିନିଷପତ୍ର ନେଇ ରକ୍ସା ଉପରେ ରଖିଲା । ରାଧି ରକ୍ସା ଉପରେ ବସି କୁଂଜିଆ ଆଡ଼କୁ ଚାହିଁ ନୁଗା ପଣତରେ ମୁହଁ ପୋଛିଲା ।

× × ×

ତହିଁଆରଦିନ ଦ'ପହରରେ ସମାବେଶ କାମ ଚାଲିଚି; କୁଂଜିଆ ଗୋଲର ଟାଣୁ ଟାଣୁ ସମସ୍ତଂକ ସାଂଗରେ ପାଟିକରି ଡ଼ କୁଚି—

ହେ ଲେ ସା ।

ଏତିକିବେଳେ କୁଂଜିଆ ଗାଁର ସଦାନନ୍ଦ ବେହେରା ଆସି ତା କାନ ପାଖରେ ଖବର ଦେଲା ଯେ, ସେ କଲିକତାରେ ଗୋଟାଏ ମାଇକିନିଆ ନେଇ ରହିଲାଣି ବୋଲି ଶୁଣି ଗଉରୀ ଦୁଃଖ ହେଇଗଲାଣି । ଟଳି ମଙ୍ଗୁଳିର ଅମେତାସିଆ ଦନ ସେ କେଉଁଠୁପାଇଁ ହରିଆ ମାହାରଣା ପୁଅ ଚେମ୍ନା ମାହାରଣା ସଂଗେ ନଡ଼ା ବଡ଼ାକରେ ବସିପଡ଼ିଲା ।

କୁଂଜିଆ ଦ'ଂଡେ ଠିଆହେଇ କ'ଣ ଭାବିଲା । ତାକୁ ଅନ୍ୟମନସ୍କ ଭାବରେ ପଛକୁ ପଡ଼ିଯାଉଥିବାର ଦେଖି ସା ଗଞ୍ଜଇମାନେ ତାକୁ କଡ଼ିକରି ପଛରୁ ଗୋଟାଏ ଧକା ମାଇଲେ ।

କୁଂଜିଆ ପୁଣି ଚେତା ପାଇ ମୁହଁ'ବେକର ଟାଣୁ ଟାଣୁ ପଡ଼ା କଂପା'ଇ ପାଟି କରି ଉଠିଲା—

ହେ ଲେ ସା ।

---

# ଡିମ୍ବ ଭି

ଗୋପୀନାଥ ମହାନ୍ତି

ଧୀରେ, ଧୀରେ, ଧୀରେ—ସବା ଉପରେ ପହଞ୍ଚିବାକୁ ଆଉ ବାର ହାତ ବାକି ଅଛି, ଗୋଟ'କ ପଛେ ଗୋଟାଏ ହୋଇ ଉପରକୁ ଉପରକୁ ଚାଲିଛି ପାଦ ଦ'ଟା, ଗୋଡ଼ର ପେଣ୍ଟା ଓ ଜଙ୍ଘ ଯେପରିକି ଫାଟି ପଡ଼ିଲାଣି, ଗୁହା ଭିତରେ ଧୂଡ଼ମୁଣ୍ ଚାଲିଛି, ମୁଣ୍ଡର ଟୋପି ଫାନ୍ଦରେ ବାଳଗୁଡ଼ାକ ଝୁଲୁଛି ଓଳରୁ ବର୍ଷାପାଣି ପରି, ହାଫ୍ ପ୍ୟାଣ୍ଟ ହାଫ୍ କମିଜ ଓଦା ସର ସର, ତଥାପି ଟେକି ହେଲପରି ଚାଲିଛି ଦେହଟା, ଲାଗୁଛି ସତେକି ପବନରେ ଆଉଜିଛି । ପର୍ବତର ମଝୁଡ଼ି ହୋଇଗଲା, ରମେଶ ଅଟକିଲା ।

ବଡ଼ ଗଛର ବଣ କାନ୍ଧ ତଳେ ରହିଲାଣି, ଉପରୁ ଦିଶୁଛି କଳାଧୂମର, ଯେପରିକି ପାତାଳକୁ ଓହ୍ଳେଇଯାଇଛି ଅଗନ'ଗ୍ନି ବନସ୍ତ । କିନ୍ତୁ ଉପରେ ଲଣ୍ଡା ଚଟାଣ, କରେ କରେ ଘାସ, ଚାରିପାଖେ ଆକାଶ ।

ପର୍ବତ ଚଢ଼ିବା ଖୁବ୍ କଷ୍ଟ ସେ ଆପଣା ପାଖେ ସ୍ୱୀକାର କଲା, ଦଳର ଅନ୍ୟମାନଙ୍କ ଆଗରେ ସେକଥା କହିବାକୁ ଲାଜ ମାଡ଼େ । ବୟସରେ ସେହି ତ ଟୋକା, ସେମାନେ ବୁଢ଼ା ବା ଦରବୁଢ଼ା; ତା ଛଡ଼ା ସେ କର୍ମଚାରୀ ଅଧିକାରୀ ଲୋକ, ଯେତେ କଷ୍ଟ ପାଉ, ତଳ ଓଠରେ ଦାନ୍ତ ମାଡ଼ିଦେଇ କାଠପରି ରହିବା ତାର କର୍ତ୍ତବ୍ୟ । ଓଲଟି ସେମାନଙ୍କୁ କହେ, 'କଣ ତୁମେ ଏତିକିରେ ଅଟକିଗଲ ?' ସବୁଆ ନହକା ଭେଣ୍ଡିଆ ଲୋକ, ଜୋତାମଡ଼ା ପାଦରେ ଦାଢ଼ୁଆ ଗୋଡ଼ିଆ ପଥର ଉପରେ ଖଟ୍ ଖଟ୍ ଡେଇଁ ଆଗେ ଆଗେ ଚାଲିଯାଏ ।

ଇଞ୍ଜିନ ପରି ହଁ ହଁ ହୋଇ ଉପରକୁ ଉଠି ଆସୁଛି ଚପରାସି ବନୁ, ଓଡ଼ିଆ ରମେଶ ଉପରେ ଠିଆହୋଇ ଅପେକ୍ଷା କଲା । ବନୁର ପ୍ରକାଣ୍ଡ ଠେକା ଧୀରେ ଧୀରେ ବଡ଼ ହୋଇ ହୋଇ ଉପରକୁ ଉଠୁଛି, ଯେପରି କି ଗୋଟାଏ ମାଟିଆ ବର୍ଣ୍ଣର ଅତିକାୟ ଛତୁ । ତା ତଳେ କଳା ମିଶ୍‌ମିଶ୍ ଗେଟମ୍ ଗାଟମ୍ ଲୋକଟି, ନାକରେ କାନରେ ସୁନା ନୋଳି, ଦେହରେ କୋଟ ପ୍ୟାଣ୍ଟ, ବନ୍ଧୁକ ବୋହିଛି ଓ ପିଠିରେ ଫ୍ଲାସ୍କ ଝୁଲେଇଛି । ବନୁ ଉପରେ ଆସି ଠିଆ ହୋଇ ହାଁ ହାଁ ହେଲା । ପାଟି କଲା, "ଏହି ଡେରେବେରେ ଓ ।ଦୁଢ଼େ ।" ରମେଶ ପଛଆଡ଼େ ତା'ର ସାଇନ୍‌ବୋର୍ଡ ପରି ଠିଆହୋଇ ରହିଲା ଚପରାସି ।

ତଳୁ ସମସ୍ୱରରେ ଗୀତ ଶୁଭୁଛି, ଗୀତର ଗହଳ ଘୋଷା ଲହରେଇ ଉଠୁଛି, "ବାଇଲେ,—ବାଇଲେ— ।"

ଆଗ ଜଣେ, ତା'ପରେ ଦୁଇ ଜଣ, ତା'ପରେ ଏକାଠି ଆଠଜଣ ଭରୁଆଙ୍କ ଚେହେରା ଫୁଟି ବାହାରିଲା ଢେଙ୍ଗା ଘାସ ଉହାଡ଼ରୁ କୌପୀନ ପିନ୍ଧା କଳା ଲୋକ, ଖାଲି ଦେହ । ଗୀତ ବନ୍ଦ ହେଲା । ବାବୁ ପଚାରିଲା, "ଖାଲି ଅଳସୁଆଗୁଡ଼ାକ, ଯେତେ ଗାଳିଦେଲେ ଖାଲି ପଛରେ ପଡ଼ିଥିବେ ।" "ବୁଢ଼ା ହୋଇଗଲୁ ଯେ ଆଜ୍ଞା", ଜଣେ କିଏ ଉତ୍ତର ଦେଲା । ଲାଗିଲା ତାଙ୍କର ହସ, ସେମାନେ ଖଣ୍ଡେ ଛୁଡ଼ି ବସିପଡ଼ି ପିକା ଲଗେଇଲେ ।

ବାବୁ ଫ୍ଲାସ୍କ ଖୋଲି ଚା' ଦେଲା । ଗୋଟିକିଆ ଅଁଳା ଗଛ ତଳେ ବସିପଡ଼ି ରମେଶ ଚା' ପିଉ ପିଉ ପଚାରିଲା, "ଆଉ କେବେ ଏବାଟେ ଆସିଥିଲ, ବାବୁ ?"

"ଆଉ ଥରେ ଆସିଥିଲି ଦୁ'ବର୍ଷ ତଳେ, ତା ଆଗରୁ ତ ଅନେକ ଥର ।"

"ଆଉ କେହି ଅଧିକାରୀ ଏବାଟେ ବୁଲି ବୁଲି ଆସିଥିଲେ ?"

"କେତେ ଆସିଥିଲେ ଆଜ୍ଞା, ଏ ତ ହାଟକୁ ଯିବାକୁ ପାଙ୍କବାଟ, ଯା ଅସ ହୁଏ ।"

ରମେଶର ଆତ୍ମାଭିମାନ ଦବିଗଲା । ପିଲାଦିନୁଁ ଏପର୍ଯ୍ୟନ୍ତ ସବୁଠୁ ବେଶୀ ଆନନ୍ଦ ସେ ପାଇଆସିଛି ସମସ୍ତଙ୍କ ଆଗରେ ହେବାରେ । ଆଉ, ସେହି ତ ଉପଯୁକ୍ତ ସମ୍ମାନ ପାଇଁ, ପ୍ରତିଷ୍ଠା ପାଇଁ । ଉତ୍ତର ବାଲେଶ୍ୱରର କାହିଁ ଏକ କ୍ଷୁଦ୍ର ମଫସଲରେ ଗୋଟିଏ ଦରିଦ୍ର ପରିବାରରେ ତା'ର ଜନ୍ମ । କେତେ ସାଙ୍ଗୀ ଅଟକିଗଲେ ଗାଁ ଚାଟଶାଳୀରେ, କେତେ ପୁଣି ରହିଗଲେ କଲେଜ ଏପାଖେ, ତା ଗାଁରୁ ସେ ଏକା କଲେଜ ଅତିକ୍ରମ କଲା, ତା ବି ସମ୍ଭବ ହେଲା ସ୍କଲାରସିପ ବଳରେ । ପ୍ରତିବର୍ଷ ପ୍ରାଇଜ ବହି, ପରୀକ୍ଷାରେ ଫଳ, ସ୍କଲାରସିପ, ମେଡାଲ, ଖବରର ବାଙ୍କେ ବାଙ୍କେ ଗଡ଼ିଲା ତା ସାଫଲ୍ୟ ଏତିକି, ରମେଶ ତା'ର ସ୍ମୃତିରେ ଗର୍ବିତ । ତା'ପରେ ଦିନେ ସେ ଚାକିରିରେ ଯୋଗ ଦେଲା । ଅଚିହ୍ନା ଲୋକେ ଚିହ୍ନା ହେବାକୁ ଆସି ଦଣ୍ଡବତ କଲେ, ଚପରାସି ସଲାମ ଦେଲା, ଚକ୍ରବୁଢ଼େ ଇନ୍ସ୍ୟୁରେନ୍ସ ଏଜେଣ୍ଟ ଜଗିବାକୁ ଆସି ଚା ଖାଇବାକୁ ନିମନ୍ତ୍ରଣ କରିଦେଇ ଗଲେ, ଭଦ୍ରଘରର ସମ୍ବନ୍ଧ ଆସିଲା, ସାଙ୍ଗଚଢ଼ିଆ ଉମେଶ ଆସି ହସି ପଚାରିଗଲା, "ଭାଇ, ତୋ ବାହାଘର ବିଷୟରେ କାହା ସଙ୍ଗେ କଥାଭାଷା ହେବା କହିଲୁ ଟିକିଏ ।" ଦଣ୍ଡବତ, ଦଣ୍ଡବତ, ଚାରିଆଡ଼େ ଦଣ୍ଡବତ ! ବ୍ୟକ୍ତିଗତ ଉଦ୍ୟମର ପରୀକ୍ଷା ପରୀକ୍ଷାରେ ପ୍ରଥମ ଜିତାଜିତ, ତା'ର ଆତ୍ମାଭିମାନ ପାଲଟିଲା ଆତ୍ମବିଶ୍ୱାସ । ରମେଶ ବୁଝିଲା, ସେ ଜଣେ କେହି ।

ତା'ର ପୃଷ୍ଠଭୂମିରେ ସେହି ଅଗଣିତ ଲୋକେ, ଯେଉଁମାନେ କେହି ନୁହନ୍ତି ।

କିନ୍ତୁ ପଦେ ପଦେ ଝେଣ୍ଟା ଲଗେ ଯେତେବେଳେ ସେ ଦେଖେ, ଯେତିକି ଆଗକୁ ମାଡ଼ିଲେ ବି ତା ପୂର୍ବରୁ ଅନେକ ଆହୁରି ଆଗକୁ ଯାଇଛନ୍ତି, ଯେତେବେଳେ ଦେଖିଲେ ଆଗରେ ଅନେକେ, ଆଉ ତାଙ୍କ ଗୃହିଁଲେ ସେ ଅତି ନଗଣ୍ୟ ।

ଅନ୍ତତଃ ପର୍ବତ ଚଢ଼ିଲାବେଳେ ଏପରି ଲାଗୁଥିଲା ; ଯେପରି ତା'ର ସଭ୍ୟ ଗୋଷ୍ଠୀରୁ ସେହି ଏକାଟେ ଆସିଛି ପ୍ରଥମ ହୋଇ । ସତ ନ ହେଲେ ବି କଳ୍ପନା କରି ଆନନ୍ଦ ପାଉଥିଲା । ଗ୍ଯ' ଦେଇ ଦେଇ ବନ୍ଧୁ କହୁଚି— "ଏଇ ପର୍ବତ ଉପରେ ସେଥର ବଡ଼ ସାହେବ ଗ୍ରାଉଣି ପକେଇଥିଲା, ରହିଗଲୁଁ ଏଠି ପାଞ୍ଚଦିନ । ସତେକି ସହର ବସିଥାଏ । ଆଉ କି ଶିକାର, କି ନାଚ ତାମସା, କେତେ କଥା ।"

ହଁ, ମଣିଷ ଆସିଛନ୍ତି, ମଣିଷ ଯାଇଛନ୍ତି, ଯଦିଓ ଦେଖିଲେ ଲାଗୁଛି ଏ ଅନ୍ଧାର ବଣ ସବୁଦିନ ଏହିପରି ଅନ୍ଧାରୁଆ ।

"ସେକାଳର ବଣ ଆଜ୍ଞା, କାହିଁ ଆଉ ସେ !" ବନ୍ଧୁ କହିଲା, "ଭାରି ବଣ ଥିଲା, ଜନ୍ତୁ ଯେ ଜନ୍ତୁ କହିଲେ ନସରେ । ସେ ବଣ ସରିଗଲା, କନ୍ଧମାନେ ହାଣି-ପକେଇଲେ । ଏଇଠି ଥିଲା କେତେ କନ୍ଧ ଗାଁ, ବଣ ସରିବାରୁ ବାଘ ଧରି ଧରି ଖାଇଲା, ସେମାନେ ଉଠିଗଲେ ।"

"ଏକାଳେ ବଣ ନାହିଁ, ଆଉ ଏଗୁଡ଼ା କ'ଣ ?"

"କଟା ହୋଇ ଫେରି ବଢ଼ିଯାଇଚି, ଯେତେ ବଢ଼ିଲେ ସେ ବଣ ଆଉ କାହୁଁ ହେବ ?"

ମଣିଷ ଆସିଛି, ବଣ ଭିତରକୁ ଭେଦିଛି, ଫେରି ହଟିଯାଇଛି, ଫେରି ଆସିଛି । ବଣ ପାହାଡ଼ରେ ବି ତା'ର ସୁଖଦୁଃଖର ଧାର ନଭିନାହିଁ, ଛପି ରହିଛି, ଘଞ୍ଚ ଜଙ୍ଗଲ ତଳେ ତଳେ ଗୋଡ଼ି ସାଲୁ ସାଲୁ ସରୁ ଝରଣାର ଧାର ପରି ।

ରମେଶର ଆତ୍ମଚେତନା ଉଦାସ ହୋଇ ଧିମେଇଁପଡ଼ିଲା ସେହି ଗଣ ଚେତନାରେ ।

ଭଙ୍ଗା ବାଡ଼ ତଟରେ ଗୁଣ୍ଡି ଗୋଟେଇବାକୁ ସରୁ ହୋଇ ପିମ୍ପୁଡ଼ି ଧାରଟିଏ ଲାଗିଗଲାଣି, ରମେଶ ଚମକିପଡ଼ି ନଜର କଲା । ହସିଦେଇ ମନକୁ ମନ କହିଲା, "ଖାଲି ମଣିଷ ନୁହନ୍ତି, ପିମ୍ପୁଡ଼ି ବି ।" ଗୁରି ହଜାର ଫୁଟ ପର୍ବତ ଉପରେ ମଣିଷର ଗୃହସ୍ଥଳର ସାଥି ପିମ୍ପୁଡ଼ି ବି ରହିଛି । ସାମାନ୍ୟ ପିମ୍ପୁଡ଼ି ଯେପରି

କି ତା'ର ଏ ପର୍ବତ ବୁଲାର ଅସଲ ଉଦ୍ଦେଶ୍ୟ ତାକୁ ସ୍ମରଣ କରେଇଦେଲା । ଠିଆ ହୋଇପଡ଼ି ସେ ପଚାରିଲା—"ବାନ୍ନୁ, ଗୁଉଲ କେମିତି ଧରିବା ତ ?"

"ତା ଆଉ ଧରିବା ନାହିଁ ? ଯୋଉବାଟେ ଗଲେ ବି ଗୁଉଲ ବାହାରିବ ଯାଇ କଷ୍ଟାଓ୍ୱାଲମା ହାଟରେ । ଅଇଗ୍ଯ ୧୦ଟା ବାଜିଛି, ଏଇ ଚାଲୁଟା ଓହ୍ଲେଇ-ପଡ଼ିଲେ ଆମେ ସେଠି ପହଞ୍ଚିବା ଦ'ଟା ଆଗରୁ । ତା'ପରେ ତ ଗୋଟିକି ଗୋଟି ଧରିପକେଇବା, ଯିବେ କୁଆଡ଼େ ?"

"ବେଶ୍, ଚାଲ ତେବେ, ଆଉ ଡେରି ନାହିଁ ।" ଏଠି ବି ବିଶ୍ରାମ ମିଳିବ ନାହିଁ ଜାଣି ବାନ୍ନୁ ବିରକ୍ତ ହେଲା । କିନ୍ତୁ ଉପାୟ ନାହିଁ । ଯାହା ଜାଣିଥିଲା ପୁସ୍ତୁଆ ପାଞ୍ଚଟା କଥା ବୋଲି, ତାହାର ବାହାଦୁରି ଦେଖାଇ କହି ବୋହିଆଙ୍କ ଉପରେ ଗର୍ଜନ କଲା "ହେଇ, ତେରେବେରେ ହାଲା ମୁଡ଼େ (ଯାଅ) ?"

କହଲୋକେ ଗର୍ ଗର୍ ହେଲେ । ଭଲ କଥା, ଟିକିଏ ବିଶ୍ରାମ ନାହିଁ, ଖାଲି ଦୌଡ଼ ଦୌଡ଼ । ମାଙ୍କଡ଼ ଖେଙ୍କିଲା ପରି ଆଦିମ କୁଲି କହି ଭାଷାରେ ବାନ୍ ଓ ତା'ର ପୂର୍ବପୁରୁଷଙ୍କୁ ଗା'ଳି ବଖାଣିଲେ । ସେମାନେ ଜାଣନ୍ତି, ତାଙ୍କର ଭାଷା ଏ ବୁଝିବେ ନାହିଁ । ଏମାନେ ଖାଲି ହୁକୁମ ଦେବେ, ବୋଝ ବୁହ, ପାଣି ଆଣ, କାଠ ଆଣ । ଏତକି ପ୍ରକାଶ କରିବାକୁ କେତେଟା କହି ଶବ୍ଦ କେହି କେହି ଜାଣନ୍ତି, ବାନ୍ ବି ଜାଣେ, ସୁତରାଂ ତାକୁ ମନଖୋଲି ଗାଳିଦେଲେ କ୍ଷତି ନାହିଁ । ଆପଣା ଭିତରେ କୁହାକୋହି ହେଲେ – ଆଚ୍ଛା ବାଧ୍ଯା ଲାଗିଛି ଯ୍ଯାଙ୍କୁ ଯେ, ଏ ଦେଶର ଗୁଉଲ ସେ ଦେଶର ଲୋକ କିଣି ନେଉଛନ୍ତି ବୋଲି ଏମାନେ ବଣ ଚକଟି ଚକଟି ମୂଷା ଧରିବାକୁ ଧାଇଁଛନ୍ତି । ଲୋକ ତ ସମସ୍ତିଁ କରିବ, ସେଥିରେ ଏ ଦେଶ କଣ ସେ ଦେଶ କ'ଣ ? ଯାହାର ଯାହା ଦରକାର ସେ ଯାଇ ତାକୁ କିଣିବାକୁ ଆସିଲା, ସେଥିରେ ଅପରାଧଟା କଣ ହେଲା ? ଭଲା, ଏ ଦେଶଟା ବି କାହାର ? ଗୁଉଲ ବା କମୋଉନ୍ତି କିଏ ? ନା, ଏମାନଙ୍କ ନ୍ୟାୟଟା ଭିନେ । ସେ ନ୍ୟାୟରେ ମଦ ବାଢ଼ିଲେ ଦୋଷ, ବଣ ହାଣିଲେ ଦୋଷ, ଗୁଉଲ କିଣିଲେ ଦୋଷ, ବୋଝ ବୋହି ବୋହି ଦ'ଦନ ବାଟ ଚାଲି ଘାଲିଆ ହୋଇ ବସିପଡ଼ିଲେ ଦୋଷ । କଥା ଗପିବାକୁ ବେଳ ନାହିଁ, ଉପରସି ଗାଳି ଦେଲଣି, ବାବୁଟା ବି ମାଡ଼ି ଚାଲିଲଣି ଅଗେ ଆଗେ । କହଲୋକେ ଉଠି ପଡ଼ିଲେ । ଆପଣାର ସବୁ ଅଭିଯୋଗକୁ ଏକାଠି ଗୁନ୍ଥି ଗୀତ ଫାନ୍ଦିଦେଲେ । ତା ପଛରେ ଗୁହାଇ ଗୁହାଇ ସେହି ଏକା ଘୋଷା— "ବା'ଇଲେ—ବା'ଇଲେ—"

ସାମ୍ନାରେ ମହାବଣ, ତାହାର ତଳେ ତଳେ ପର୍ବତ ଢାଲୁରେ ଛପିଲା ସୁଡ଼ଙ୍ଗ ପରି ଭଲକୁ ଭଲକୁ ବାଟ । ପଛରୁ ସମସ୍ୱରରେ କହି ଗୀତ ରମେଶକୁ ଆନନ୍ଦ ଦେଉଥିଲା । କେତେ ସୁନ୍ଦର ଶୁଭୁଛି । କ'ଣ ତା'ର ଅର୍ଥ ହୋଇଥିବ, ନିଶ୍ଚୟ କୌଣସି ଏକ ଜାତୀୟ ଗାଥା ।

"ବନ୍ଟୁ !" ରମେଶ ଉଚ୍ଛିଳା ।

ମନେ ମନେ ଡାକୁ ଗାଳି ଦେଇ ଦେଇ ପଥର ଉପରେ ଟଳ ଟଳ ହୋଇ ବନ୍ଟୁ ତା ପାଖକୁ ଚମକିଗଲା । ତାର ବୟସ ପଞ୍ଚାବନ, ମୁଣ୍ଡ ମଝିରେ ଚନ୍ଦା, ଛ'ଟି ଦାନ୍ତ ପଡ଼ିଗଲାଣି । ଏ ବୟସରେ ପାହାଡ଼ ଚଢ଼ା ତା ଦେହକୁ ସହେ ନାହିଁ, ଦେହ ଖୋଳେ ଦୃଷ୍ଟି ମଠ ମଠ ଗ୍ରହେ । କିନ୍ତୁ ଏ ଟେକା ଅଧିକାଂଶ ତରତର କରଦଏ, ଅମଡ଼ା ମଡ଼ାଏ, ଆପେ ବାଘ୍ୟ, ପରକୁ ବାଘ୍ୟ ଲଗାଏ । ବନ୍ଟୁର ଖାଇବାକୁ ଅଭାବ ନାହିଁ, କିନ୍ତୁ ଚାକିରି ଚାଲିଗଲେ ତାର ଷମତା ଚାଲିଯିବ, କଳାହରଣ ହୋଇ ସେ ହେବ ସାମାନ୍ୟ ଏକ ଦେଶୀୟ, ଜଙ୍ଗଲଯାକ ବାଘ ପଛେ ପଛେ ବାଲୁଆପରି ସେ ଦେଶୀୟଙ୍କ ଉପରେ ଚରଛି, ପୁଣି ନିଜେ ଦେଶୀୟ ହୋଇ ପଡ଼ି ରହିବାକୁ ହେବ ଭାବିଲେ ଜୀବନ ଉପରେ ଧିକ୍କାର ଜନ୍ମେ । ସେହି ଭୟରେ ବନ୍ଟୁ ପାହାଡ଼ ଚଢ଼େ ।

"ବନ୍ଟୁ, ଏମାନେ ଭାରି ସୁନ୍ଦର ଗୀତ ଗାଉଛନ୍ତି ।"

"ଭାରି ସୁନ୍ଦର ଆଜ୍ଞା !"

"କଣ ଏମାନେ ?"

ଖଙ୍କଲେଙ୍କ ପରି ପଗଡ଼ି ହଲେଇ ଢ଼'କଲ ଟାନ ଭିତରୁ ଅବୁଝା କଥା ଗୀତର ଅର୍ଥ ଫାନ୍ଦିଦେଇ ବନ୍ଟୁ କହିଲା, "ଏଇଟା ସେଇ ଚଇତ୍ ପରବର ଗୀତ, ଆଜ୍ଞା !"

"କଣ ସ୍ୱାର ମାନେ ?"

ଖାଲି ଧାଂଡ଼ାଧାଂଡ଼ୀ କଥା, ସେଇ ପୁରୁଣା କଥା—ଯେମିତି କହନ୍ତି ନା— —ତତେ ଦେଖି ମୋର ବଡ଼ ଶରଧା, ଏ ଜାଇଫୁଲ । ତୁ କେବେ ମୋ ଘରକୁ ଆସିବୁ, ଏ ଜାଇଫୁଲ !" ବନ୍ଟୁ ହସିଲା ।

ରମେଶ କହିଲା, "ସବୁଦିନେ ସ୍ୱାଙ୍କର ଏଇ ଗୀତ ?"

"ସବୁଦିନେ ଆଜ୍ଞା !"

"ବା'ଇଲେ ଅର୍ଥ କଣ ଜାଇଫୁଲ ?"

"ଠିକ୍ ଧରିଚନ୍ତି ଆଜ୍ଞା, ଆପଣ ଏମିତି ଶିଖି ବସିଲେ ଭାରି ଚଞ୍ଚଳ ସ୍ୱାଙ୍କ ବୋଲି ଶିଖିଯିବେ ।"

ରମେଶ ଖୁସି ହେଲା, ପଚାରିଲା, "ଯେତେ ବୁଢ଼ା ହେଲେ ବି ଏଇ ଗୀତ ?"

"ଆମ ଦେଶରେ କେହି ବୁଢ଼ା ହୁଅନ୍ତି ନାହିଁ ।"

ରମେଶ ମନେ ମନେ ଲେଖି ରଖିଲା, 'ବା'ଇଲେ ମାନେ ଜାଇଫୁଲ କନ୍ଧମାନେ ଖାଲି ଘେନାଘେନି ଗୀତ ଗାଆନ୍ତି ।

ରମେଶକୁ ଭୁଲେଇ ଦେଇ ବନ୍ଟୁ ଖୁବ୍ ଖୁସି ହେଲା ।

କନ୍ଧ ବୋହିଆ ଗୀତରେ ଗୀତରେ ଚପରାସି ଓ ଅଧିକାରୀମାନଙ୍କୁ ଗାଳି ଦେଇ ଦେଇ ଗାଇଲେ, ଗାଇ ଗାଇଲେ ଆପଣାର ଦୁଃଖ ଦୁର୍ଦ୍ଦଶା । ବାଟରେ ଦେଖା ପଡ଼ିଲେ ପଞ୍ଚା ପଞ୍ଚା ହାଟମୁହାଁ କନ୍ଧ ବାଟୋଇ । ଗୀତ ଶୁଣି ହସିଉଠିଲେ, ଗୀତରେ ଗୀତ ଯୋଡ଼ିଦେଲେ । ସମଦୁଃଖୀ ସେମାନେ, ଏକା ଉପହାସରେ ଭାଗୀ । ଗୀତ ଗାଇ ଗାଇ ପାଟି ଯୋଲାହେଲେ ବୋହିଆ ଭୂଜପଡ଼ନ୍ତି, ବନୁ ଗର୍ଜନ ଛାଡ଼େ—"ହେଇ, ଗୀତ ଗା, ଗୀତ ଗା ।"

"ଆମ ଦେଶରେ କେହି ବୁଢ଼ା ହୁଅନ୍ତି ନାହିଁ ।" ଆପଣାର କଥା ବନୁର ଆପଣା ଆଗେ ନୂଆ ରୂପ ଧରି ଠିଆ ହେଲା । ସେ ତାର ସାନ ଭଉଣୀ, ତୃତୀୟ ପକ୍ଷ । ଆଗର ଦୁଇ ଭଉଣୀ ଅଛନ୍ତି, ତଥାପି ବର୍ଷେ ହେଲା ସେ ଆସିଛି । ଅଧିକ କନ୍ୟା ମୂଳ ଦେଇ ତାର ବାପ ମାଙ୍କୁ ମଙ୍ଗେଇ ଅନ୍ୟ ଜଣକ ଆଶା ମୁହଁରୁ ସେ 'ଗୋରି'କୁ ଏକ-ପ୍ରକାର ଛଡ଼େଇ ଆଣିଛି । ଏ ଧନ ଦେଶରେ ଛଡ଼େଇ ଆଣିପାରିବା ହିଁ ପାରିଲା ପଣ, ସେଥିରେ ମଣିଷ ଜନ୍ମକୁ ଝଟିଯାଏ । କିନ୍ତୁ ବନୁର ଏ ପାରିଲା ପଣ ଉହାଡ଼ରେ ଥିଲା ଜୀବନ ଗୋଟାକର ଖୋଭ । ତା'ର ଭୋଟା ଅଛି, କ୍ଷେତ ଅଛି, ଘର ଅଛି, ଗାଈ-ଗୋରୁ ଅଛନ୍ତି; କିନ୍ତୁ ସନ୍ତାନ ନାହିଁ । ବୟସ ଯେତେ ସରି ସରି ଆସୁଛି, ସେତେ ସେ ବେଶୀ ବେଶୀ ଅନୁଭବ କରୁଛି ତାର ପୁଅଟିଏ ଦରକାର । ବାଟେ ବାଟେ ଖାଲି ତାର ଗୋରି ମନେ ପଡ଼ୁଛି । ଧ ସଉରୁଣୀ ତାକୁ ଦେଖିପାରୁଥିବେ ତ ? ମନ ରାଜି ନ ହେଲେ ଏ ଦେଶର ସ୍ତ୍ରୀ ପଳେଇଯାଏ—ଗୋରି ମନ କଷ୍ଟ କରୁ ନ ଥିବ ତ ? ଆଉ ସେ ଭେଣ୍ଡିଆ ଚପରାସି, ଯାହା ନାଁ ବଣି, ଲେଖାଯୋଖାରେ ଟାଣିଓଟାରି ଜନୁର ନାତି ସମ୍ପର୍କ ହୁଏ, ଖାସ୍ ଆଈମାନଙ୍କ ସଙ୍ଗେ ଥଟ୍ଟା ଲଗିବାକୁ ଆସି ଓଳି ଓଳି ବଡେଇଦିଏ, ସେ କଣ କରୁଥିବ ?

"ବନୁ !"

"ଆଜ୍ଞା ।"

"ଆଚ୍ଛା, ଏ ରାସ୍ତା ଆଗରୁ ଧରିପଡ଼ୁ ନାହିଁ କାହିଁକି ? ଲୁଗୁରୁଗୁଡ଼ାରେ ମାନ୍ଦ୍ରାଜ ଭଲକାକୁ ଗୁଲଣ ହେବାପାଇଁ କେଉଁଠି ତ ଗଦା ହୋଇଥିବ; ହାଟ ଲଗୁ କି ନ ଲଗୁ ସେଉଠୁ ବେପାରୀମାନେ ବୋହି ନେଉଥିବେ, କୋରାପୁଟରୁ ଆସିଲେଣି ଗୁରୁଦିନର ବାଟ, ଏତେ ଗାଁ ବୁଲିଲେଣି, ଏତେ ଜାଗା ଦେଖିଲେଣି, କାଇଁ ସେମିତି ତ ଆମ ଆଖିରେ ପଡ଼ିଲା ନାହିଁ । କଥା କଣ ?"

"ସେମିତି ଏକାଠି ବେଶୀ ବେଶୀ ରାସ୍ତା ଗଲେ କ'ଣ ଲୋକଦେଖାଣିରେ ଗୁଲଯାଆନ୍ତା ?" ବିରକ୍ତ ଅବସ୍ଥାରେ କଥାଟା କହିଦେଇ ବନୁ ପସ୍ତେଇଲା । ସେ ନିଜେ ତ କ୍ଷେତର ଶହେ ମହଣ ଗୁରୁଳ ଚଢ଼ା ଦରରେ ସଦାକୁ ପଠେଇସାରିଛି । ସେ ବିଶ୍ୱାସ କରେ, ଯେଉଁଠି ସମାଜର ନୀତି ଯେ ଯେଉଁ ପାଦରେ ସେ ଠିଆହେବେ,

ପ୍ରତ୍ୟେକେ ଆପଣା ଶିଙ୍ଗରେ ମାଟି ଖୋଳିବେ, ଯେଉଁଠି ପରକୁ ଠେଲିବା, ପରର ଗୋଡ଼ ଓଟାରିଦେବା, ପର କାନ୍ଧରେ ଜବରଦସ୍ତି ଲଦି ହେବା ବା ପରକୁ ଚଟା କାଟିବା ଉଦ୍ୟୋଗୀ ଲୋକ ପକ୍ଷରେ ଆପେ ଆସେ, ନ ହେଲେ ନିଜେ ବଡ଼ଲୋକ ହେବା ଅସମ୍ଭବ । ଯେଉଁଠି ନିଜ ପାଇଁ ନିଜ ଛଡ଼ା କେହି ନାହିଁ, ସେଠି ସମସ୍ତିଙ୍କ ସମୂହ କଲ୍ୟାଣ କଳ୍ପିତ ନିୟମକୁ ଚଲଖ ଲୋକ ନିଜ ସ୍ୱାର୍ଥ ପାଇଁ ଭାଙ୍ଗିବାହିଁ ସ୍ୱାଭାବିକ ଓ ଉଚିତ ବୋଲି ସେ ଭାବେ । ଧରା ପଡ଼ିବାକୁ ଡରେ । କଥା ବାଁରେଇ-ଦେଇ କହିଲା, "ଏଠି ବେଶୀ ବେଶୀ ଚାଉଳ କୌଣସି ଜଣକ ହାତରେ ଯଦ କୁ ଯାଉନାହିଁ ଆଜ୍ଞା, ସେମିତି ହୋଇଥିଲେ ଆମ ଆଖିରେ ପଡ଼ିଥାନ୍ତା, ଲୁଚନ୍ତା କୋଉଠି ? ହାଟକୁ ଗଲେ ଆପଣ ଦେଖିବେ କିଏ ପାଞ୍ଚ ସେର, କିଏ ଦଶ ସେର କରି ଚାଉଳ କିଣି ନେଇଯାଉଛନ୍ତି, ଏମିତି ଶହ ଶହ ତଳଦେଶର ଲୋକ । ହାକୋଟ ଗ୍ରାମ ମାନ୍ଦ୍ରାଜର ସୀମା, ସେଠି ସାହୁକାର ବସିଥିବେ, ଶଗଡ଼ ଥିବ, ପାଖେ ଚାଉଳ ପଟରେଇବାକୁ ବସ୍ତା, ପାଖେ ଟଙ୍କା ମୁଣି । ନହେଲେ ତାଙ୍କର ଟଙ୍କାରେ ମୁଣ୍ଡବୋହିଆ ଚାଉଳ କିଣି ଆଣିଥିବେ । ସେ ଚାଉଳ ଜମା ହେବ । ବସ୍ତାରେ ପଶିବ । ଚାଲିବ ଶଗଡ଼ ଭବାନୀପାଟଣା, ପାର୍ବତୀପୁର, ବୋବିଲି, ମକୁଆ । ବେପାରୀ ଲୋକର କଥା ଅଲଗା, ଆଜ୍ଞା !"

"ବେପାରୀ ହାତରେ ପଡ଼ିବା ପୂର୍ବରୁ ସେଇ ଚାଉଳ ଆମେ ଧରିଦେବା", ଗମ୍ଭୀର ହୋଇ ରମେଶ କହିଲା । ତା'ର ଆଖିରେ ଝଟକୁଥିଲା ଶିକାରୀ ଆଖିର ଆଲୁଅ । ମନରେ ଗୋଟାଏ ବ୍ୟଥା,—ଆମର ଚାଉଳ କାହିଁକି ସେମାନେ ବୋହିନେବେ ? ଏଇଟା ଯେପରିକି ତା'ର ବ୍ୟକ୍ତିଗତ ଅଧିକାର ଉପରେ ହସ୍ତକ୍ଷେପ ।

ଆମର କହିଲାବେଳେ ତା'ର ବ୍ୟକ୍ତିତ୍ୱ ବୁଝେଇ ଖାଲି ଗୋଟାଏ କଥା,—ସେ ଓଡ଼ିଆ । ତା' ପଛରେ ଓଡ଼ିଶାର ଇତିହାସ ଓ ସେ ଇତିହାସରେ ପଡ଼ୋଶୀ ଦେଶ ଉପରେ ରାଜ୍ୟବିସ୍ତାର, ଯୁଦ୍ଧ ଜୟ, ସାମ୍ରାଜ୍ୟ ସ୍ଥାପନ । ଅତୀତର ଧୂଳିଗଦା ଓ ଭଙ୍ଗା ଇଟା କୁଢ଼ରୁ ବର୍ତ୍ତମାନର ଖ୍ୟାତିହୀନତାକୁ ସେ ଫେରିଆସେ, ମନର ଓରମାଣ ମେଣ୍ଟାଇବାକୁ ପଡ଼ୋଶୀ ଦେଶ ଉପରେ ଦୋଷ ଢାଳିଦିଏ ।

"ଖାଇ ଖାଇ ଖତମ କରିଦେଲେ ଦେଶ ଗୋଟାକୁ, ଆଉ ଫେର୍ କ'ଣ ?"

ବଣ ବାଟରେ ଶିକାର ମନେ ପଡ଼େ । ରମେଶର ମନରେ ଛାଇଯାଏ ଚାଉଳ ଶିକାରର ନିଶା । "ଧରିପାରିଲେ,—" ଦାନ୍ତରେ ଦାନ୍ତ ଚିପି ସେ କହେ । ଧରିପାରିଲେ କ'ଣ କରିବ ସେ ଜାଣେ ନାହିଁ ।

ତରତର ହୋଇ ତଳକୁ ତଳକୁ । ମାଘର ପାଗ ଏ ବାଟର ତାତି ମିଶିଯାଇ ବସନ୍ତର ଅନୁଭୂତି ଆଣୁଛି; ଯୁଆଡ଼େ ଚାହିଁଲେ ପତ୍ରପୁଷ୍ପ ଗଛପତ୍ରର ଶୋଭା । ଗଡ଼ାଣି ଶେଷରେ ବାଟ କରରେ ତଳମାଳର ଗାଁ'ଟିଏ ପଡ଼ିଲା । ଆମ୍ବ ତୋଟା, କ୍ଷେତ, ଖଳା, ଧାଡ଼ି ଧାଡ଼ି ଘର । ଯିବା ବାଟ, ପିଲାଟିଏ ଠିଆ ହୋଇଥିଲା, ଅଚହ୍ନା ଲୋକ ଦେଖି ଭେଁ କରି କାନ୍ଦି ମା'କୁ ଡାକି ଡାକି ଦଉଡ଼ି ପଳେଇଲା । ସେଇ ହେଲା ସଙ୍କେତ, ବାଡ଼ କରରେ ଖୁଣ୍ଟିରେ ବନ୍ଧା ହୋଇଥିବା ବାଛୁରୀମାନେ ପଘାରୁ ଉହୁଙ୍କି ହୋଇ ହମ୍ବାରଡ଼ି ଦେଲେ । ସ୍ତ୍ରୀଲୋକମାନେ ଆଡ଼ଲୁଚି ହୋଇ ମିଟିମିଟି କରି ଅନେଇଁ ରହିଲେ । ଗାଁ' ଲୋକ ଗୋଟି ଗୋଟି ହୋଇ ପାଖକୁ ଆସିଲେ । ରମେଶକୁ ଲାଗିଲା, ଏ ଦୃଶ୍ୟ ତା'ର ଚହ୍ନା ଚହ୍ନା । ପାଦ ଆଗେ ଘୋଷାରି ହେଲା । ଝଙ୍କା ଗଛ ଗୁଳିରେ ଅଟକିରହି ସେ ପଛକୁ ଅନେଇଁଲା । ପ୍ରକାଣ୍ଡ ମନଗଢ଼ା ଭୂତପରି ପର୍ବତଟା ପଛରେ ଠିଆ ହୋଇଛି । ଧକେଇ ଧକେଇ ବିନୁ ଆସୁଛି, ଦୌଡ଼ି ଦୌଡ଼ି ଆସୁଛନ୍ତି ବୋହିଆ ।

"ଏଠି ଭଲ ପାଣି ମିଳିବ, ବିନୁ ?"

"ମିଳିବ" । ବିନୁ ଉତ୍ତର ହେଲା । ବୋକଚ୍ଚ ଖୋଲି ଲୋଟା ଗିଲାସ ବାହାର କରି ଗାଁ'କୁ ଗଲା । କାନ୍ଧ ବୋହିଆ ବସି ବସି ଝାଳ ମାରିଲେ । ରମେଶ ଅପେକ୍ଷା କଲା ।

ଅଳ୍ପ ସମୟ ଭିତରେ କୁଆଡ଼ୁ ଆସି ପହଞ୍ଚିଗଲା ଗୋଟାଏ ଦୌଡ଼ିଆ ଖଟ । ଜଣେ ଗୋଟାଏ ଲୋଟାରେ କିଛି ଗରମ ଦୁଧ ଆଣି ଠିଆ ହେଲା । ଆଉ ଜଣେ ଆଣିଲା ଫେଣାଏ ପାଚିଲା କଦଳୀ । ତେଲେଙ୍ଗୁ, ଓଡ଼ିଆ, କୋଣ୍ଡାଦୋରା ମିଶି ଗାଁ'ର ସାତଜଣ ଗଉଡ଼ ଆସି ଅନୁନୟ କଲେ, "ଖରା ବହୁତ ହେଲାଣି, ଦୟାକରି ଏଠି ଟିକିଏ ବିଶ୍ରାମ ନେଇ ଗଣ୍ଡିଏ ଖାଇକରି ନ ଗଲେ ଗାଁ' ଲୋକଙ୍କ ମନ କଷ୍ଟ ହେବ ।"

ବିଶ୍ରାମ !

ରମେଶ ହସିଲା । ବାଟେ ବାଟେ ସେହି ନିମନ୍ତ୍ରଣ । ହେତେକ ଗ୍ରାମଆଡ଼େ ବଣ ଜଙ୍ଗଲ ଘେରେଇ ହୋଇ ମଣିଷ ମଣିଷକୁ ହିଁ ଆଉଜିବାକୁ ଖୋଜେ । ଅଟକିଯାଅ, ରହିଯାଅ ଆଜି ରାତିଟା ଆମ ଗାଁରେ । ଚହ୍ନା ଗଛର ଛାଇ, ଅଧଚହ୍ନା ଚାଳ ଭିତରୁ ମଠୁଆ ମଠୁଆ ଚୁଲି ଧୂଆଁ, ସାଧାରଣ କାମରେ ବ୍ୟସ୍ତ ପୁରୁଷ ସ୍ତ୍ରୀ । ସେ ବଣଠୁ ଭିନେ, ପର୍ବତରେ ଥାଇ ପର୍ବତଠୁ ଭିନେ ।

ତଥାପି, ଚାଲିବାକୁ ହିଁ ହେବ । ପଛ ଗାଁର ବାଟର ସ୍ନେହ ଲାଗି ରହିଥିବ ଖଣ୍ଡେ ଦୂର, ତା'ପରେ—ପବନରେ ଉଡ଼ିଯିବ ।

ବନ୍ଦୁ ପାଣି ନେଇ ଆସିଲା । ପାଣି ପିଇସାରି ରମେଶ କହିଲା, "ଯିବା ଚାଲ ।" ଏଥର ବୁଢ଼ୀଟିଏ ଆସି ବାଟ ଓଗାଳିଲା । ହସି ହସି କହିଲା, "ଏତେ ବେଳଟାରେ ଅଖିଆ ଯିବୁ ପୁଅ, ମା ପାଖରେ ଥିଲେ ଏମିତି ଛାଡ଼ିଦିଅନ୍ତା ? ଏ ଗାଁରେ କ'ଣ ମା ଭଉଣୀ ତୋର ନାହାନ୍ତି ?" ସମସ୍ତେ ହସିଲେ । ବୁଢ଼ୀଟି ବନ୍ଧ ତେଲେଙ୍ଗା ମିଶାମିଶି କୋଣ୍ଡାଦୋରା ଭାଷାରେ । "ଏ ଗାଁରେ କ'ଣ ମା ଭଉଣୀ ତୋର ନାହାନ୍ତି ?"

ରମେଶର ଆଖି ଉପରେ ଯେପରିକି ଛାଇ ଲଦି ହୋଇପଡ଼ିଲା । ନିଜକୁ ନିଜେ ବଡ଼ ପାଟିରେ କହିପକାଇଲା—"ନା-ନା-ନା, ଯିବାକୁ ହେବ, ବହୁତ କାମ ।" ଆପଣାକୁ ଓଟାରି ନେଇ ଚାଲିଲା ।

ସ୍ମୃତିରେ ରହିଗଲା ସେହି ବୁଢ଼ୀର ମା ମୁହଁ ପରି ମୁହଁର ଛାଇ । ମା'ର ଆଖି ପେଟକୁ, ଆଉ ତୁଣ୍ଡରେ ଆହା ପଦ । ତାର ଅନ୍ୟ ଜାତି ନାହିଁ, ଭାଷା ନାହିଁ, ସେ ମା । ଚାଉଳଧରା ପାସୋରିଗଲା । କିନ୍ତୁ ପୁଣି ମନେପଡ଼ିଗଲା ଯେତେବେଳେ ଖଣ୍ଡେ ଦୂରରେ ସେ ଦେଖିଲା, ହାଟୁଆ ଚାଲିଛନ୍ତି, ଝର ଝର ଚାଉଳ ।

"ବନ୍ଦୁ, ହାଟ ଆଉ କେତେ ବାଟ ?"
"ହେଇ ଆଗରେ ଆଜ୍ଞା, ପହଞ୍ଚିଗଲେ ।"
"ହୁସିଆର୍, ହଲ୍ଲା କରିବ ନାହିଁ ।"

"ନାହିଁ ଆଜ୍ଞା, ଆରେ କନ୍ଦମାନେ, ଆଉ ଗୀତ ବୋଲ ନାହିଁ, ପ ଟି କର ନାହିଁ, ତୁନି ତୁନି ଚାଲ ।" ବନ୍ଦୁ ହସିଦେଇ ବୋହିଆମାନଙ୍କ ପାଖକୁ ଚାଲିଗଲା । ବଣ ଭିତରେ ଶିକାର କରିଗଲା ପରି । ପଦାରେ ତୁନିତାନି, ମନ ଭିତରେ ଚହଲ । ରମେଶ ତରତର ହୋଇ ତାର କର୍ମପନ୍ଥା ବିଷୟରେ ଭାବିଗଲା । ଚାଉଳର ଚୋରା ଚାଲାଣ ଖାଲି ଅଟକେଇ ଦେଇ ସେ କ୍ଷାନ୍ତ ହେବ ନାହିଁ । ପକ୍କା ବନ୍ଦୋବସ୍ତ କରିଦେଇଯିବ । ରିପୋର୍ଟ ଲେଖିବ । ପ୍ରଶଂସା ପାଇବ । ଏହିପରି ପ୍ରଶଂସା ପାଇ ପାଇ ଶୀଘ୍ର ସେ ଉନ୍ନତି କରିବ । ପରୀକ୍ଷାରେ ସମ୍ମାନ ପାଇଲାପରି ସେ ବି ଏକ ପୁରସ୍କାର । ପାଇବାକୁ ହକଦାର ସେ ନ ହେଲେ ଏତେ ବର୍ଷବୁଲା, ଖରାରେ, ଶୀତରେ । ସତେ କି କଲୋମ୍ବସ ଆଫ୍ରିକାରେ ଲିଭିଂଷ୍ଟୋନ । ସେ ଯାଇଥିଲେ ଗୋଟାଏ ନଦୀର ଉତ୍ପତ୍ତି ସ୍ଥଳ ଆବିଷ୍କାର କରିବାକୁ, ସେ ଯାଉଛି ଚାଉଳ ରପ୍ତାନିର ଚୋରା ମୁହାଣ ଆବିଷ୍କାର କରିବାକୁ । ଭାରି ଆନନ୍ଦ ଲାଗିଲା । ଆପଣା ଦୁଃସାହସରେ ଆପେ ଅଭିଭୂତ ହୋଇପଡ଼ିଲା ।

କିଛି ଆଗରେ ବାଟ କଡ଼ରେ ଗଛତଳେ ଗୋଟିଏ ପରିବା'ର ଗୋଟାଏ ସାରି ଖିଆପିଆ କରୁଛନ୍ତି । ଉଲଗ୍ନ ପିଲାଟିଏ ମାଟିରେ ଚିତ୍ ହୋଇ ଶୋଇ

ଗୋଡ଼ହାତ ଗୁଡ଼ି ଗୁଡ଼ି କାନ୍ଦୁଛି । ଝୁରୁ ଝୁରୁ ମୁଣ୍ଡୀ, ଝାଣ୍ଟିଶାଣ୍ଟି ହୋଇ ଯୁବତୀଟିଏ ତା'ର ଖାଇବା ପତ୍ର ଛାଡ଼ିଦେଇ ଅଇଣ୍ଠା ହାତରେ ଛାତି ଉପରୁ ଛିଣ୍ଡା ଲୁଗା କେରାକ ଓଟାରିଦେଇ କ୍ଷୀର ଦେବାକୁ ଧାଇଁଗଲା, ମା'ର ଚିର ଦରିଶୁଖିଲା କନାପରି ଓହଳିଛି । ପିଲାଟିକୁ ଜାକିଧରି ବିଦେଶୀ ଆଗନ୍ତୁକକୁ ଅନେଇ ବସିଲା । ଟିକେ ଦେହ ନାହିଁ, ଖାଲି ମୁଣ୍ଡରେ ଅଳିଆ ବାଳ ଆଉ ଉଦାସ ମଳିନ ଆଖି ଦୋ'ଟି । ସେ ଆଖିରେ ନାହିଁ ସମ୍ବାଦ ପାଇଁ ଆଗ୍ରହ, କାହାର ବଡ଼ତ୍ୱ ପ୍ରତି ଭ୍ରୂକ୍ଷେପ । ଦୁନିଆଁ ଆଡ଼କୁ ଖୋଲା ଥିଲେ ବି ଭିତରକୁ ତା'ର ଦୃଷ୍ଟି, କାହିଁ ତଳକୁ ତଳିତଳାନ୍ତ ଜୀବନଶକ୍ତିର କାଣ୍ଠି ଉପରକୁ, ଯେଉଁଠି ଶେଷ କ୍ଷୁଧା ବି କାଟେ, ଶେଷ ସ୍ନେହ ବି ସନ୍ତାନକୁ ପୋଡ଼େଇ ରଖେ । ଆଉ ତିନିଜଣ ଭାତ ଖାଉଛନ୍ତି : ବୁଢ଼ା, ବୁଢ଼ୀ, ଭେଣ୍ଡା ପୁଅ । ଖାଲି ହାଡ଼, ଚମ, କୋରଡ଼ ଆଉ କେତୋଏ ଲେଖାଁ ବାଳ । ଆଉ ଚକ ଚକ ଆଖି । ଖାଇବା ଭାତ ଶିଆଳି ପତ୍ର ଉପରେ ଚକ ଚକ କରୁଛି । ଭାତ ଝିଆ, ଝିଆ ନୁହେଁତ, କୁକୁରପରି ଗାବୁ ଗାବୁ କରି ଶେଫା ମାରିବା । ଗଛତଳେ ଫାନ୍ଦଭଙ୍ଗା ଚେପା ଡେକ୍‌ଚି ହାଣ୍ଡି ଓ ଚୁଲି । ଏକାଥରକେ ସମୁଦାୟ ଦୃଶ୍ୟ ରମେଶଙ୍କୁ ଯେପରି ଆକ୍ରମଣ କଲା ।

"ବିନୁ, କିଏସେ ଏମାନେ ?"

"ତଳ ଦେଶର ତେଲେଙ୍ଗି ଲୋକ, ଆଜ୍ଞା, ପେଟ ବିକଳରେ କେତେ ଏମିତି ଏ ଜଙ୍ଗଲରେ ପଲ ପଲ ହୋଇ ବୁଲୁଛନ୍ତି ।"

"ଘର କେଉଁଠି ?" ବିନୁ ପଚାରିଲେ ।

ତିନିଥର ପଚାରିଲା ପରେ ଖାଇବାପତ୍ରରୁ ମୁହଁ ନ ଟେକି ବିରକ୍ତ ହୋଇପରି ବୁଢ଼ା କହିଲା, "ସୀମାଚଳମ୍ ।"

ବିନୁ ରମେଶଙ୍କୁ ବୁଝେଇଦେଲା, ଏ ଅଞ୍ଚଳରୁ ତିରିଶ କୋଶ ଦୂରରୁ ! ସୀମାଚଳମ ଆଗେ ତ ଆମ ଓଡ଼ିଶାରେ ଥିଲା ! ଓଡ଼ିଶା ଇତିହାସ ମନେ-ପଡ଼ିଗଲା, ପର୍ବତ ପରି ଠିଆହେଲା, ମାଟିକୁନ୍ଦ ପରି ହାଜ ହୋଇଗଲା, ଗମ୍ଭୀର ହୋଇ ମିଶିଗଲା ସେହି ଖେଳାଳି ଯୁବତୀ ମା'ର ଆଖି ଦୋ'ଟିରେ । ପିଲାକୁ କ୍ଷୀର ଦେଉଛି, ଆଉଁସୁଛି । ଓଡ଼ିଶାରେ ଆଉ ନାହିଁ ସେ ଦେଶ, ମୁଠାବାରେ ଅଛି; ସେ ଦେଶରେ ମଣିଷ ଅଛନ୍ତି, ତାଙ୍କର ଭାତ ନାହିଁ ।

"ବହୁତ ଏମିତି ବୁଲୁଛନ୍ତି ଆଜ୍ଞା, ବଣଜଙ୍ଗଲକୁ ଡରୁନାହାନ୍ତି, ବାଘ-ଭାଲୁକୁ ଡରୁନାହାନ୍ତି, ସବୁଠୁ ବଡ଼ ଡର ତ ଅ'ପଣା ପେଟକୁ, ଆଉ କାହାକୁ ?"

"ସତ କଥା, ସତ କଥା" କହି ବୋହିଇ ଫଳ ଧରିଲେ । ସେମାନେ କଣ୍ଟା ଲାଗି ଆସିଲେଣି । ବୁଢ଼ା କହି କହିଲା, "ହେବ ଲାଗିଲେ କି ଦୁଃଖ ପଡ଼ିଲେ ସମସ୍ତେ

ସମାନ । ହେଇ ଦେଖ, ଆମୁକୁ କେତେ଼ ଭୋକ ଲଗିଲଣି । କେଉଁଠି ଖାଇଆ ଦବ ଯେ ଚପଗ୍ରହିବାକୁ ।''

ଚୁପ୍ ହୋଇ ରମେଶ ଆଗେ ଆଗେ ଗୃଲଲ । ହଠାତ୍ ଲଗିଲ, ଯେପରିକି ତା'ର ଉଦ୍ଦେଶ୍ୟ ଗୋଲମାଲ ହୋଇଯାଇଛି । ସେ ନ୍ୟାୟ କହିବାକୁ ଗୃହେଁ । କିନ୍ତୁ ନ୍ୟାୟର ସଂଜ୍ଞା ଭୁଲିହୋଇଯାଇଛି ।

ଦ୍ୱିଧା ବାଟରେ ଚଳନ୍ତ ମଞ୍ଚ ଉପରେ ହିଁ ସେ ନିର୍ଭର କରିଛି, ମୁଣ୍ଡପାତି ଯୋଜିଛି ଛପା ଆଇନକୁ, ଲେଖା ନିୟମକୁ, ତା ପଛଆଡ଼କୁ ଉଙ୍କି ମାରିବା ହିଁ ତା ପକ୍ଷରେ ଦୋଷାବହ ବୋଲି ହୃଦ୍‌ବୋଧ କରିଛି । ବର୍ତ୍ତମାନ ବି ହେଉପରି । କେବେ କେବେ ଦେଖିଛି, ଛପା ଆଇନ ଓ ଦାଣ୍ଡନ୍ୟାୟ ପରିଚ୍ଛି ଅମେଳ; କିନ୍ତୁ ମନକୁ ଆଶ୍ୱାସ ଦେଇଛି, କର୍ତ୍ତବ୍ୟ ହିଁ କଠୋର, ସେ ଯନ୍ତ୍ରର ଘୂର୍ଣ୍ଣନ । ପେଟ ବିକଳରେ ଜଣେ ଚୋରି କରିଛି, ବର୍ଷକର ପିଲାକୁ ଗ୍ଭଡରେ ଜାକି ଗର୍ଭିଣୀ ସ୍ତ୍ରୀ କରିଶ ଘର ପିଣ୍ଡାରେ ଗଡ଼ି ଗଡ଼ି କାନ୍ଦିଛି, ତା'ର ପୋଷଣାହାସ୍ତ ଆଉ କେହ ନାହିଁ, କିନ୍ତୁ ଚୋର ଜେଲ ଯିବା କଥା, ଜେଲ ଯାଇଛି । ଜଣେ ପାଞ୍ଚ ଥର ଚୋରି କରି ଦଣ୍ଡ ଭୋଗିଲଣି, ଷଷ୍ଠ ଥର କାହା ବାରିରୁ କଖାରୁଟିଏ ଚୋରି କରି ଧରା ପଡ଼ିଛି । ପୂର୍ବ ଦୁଷ୍କୃତ ପାଇଁ ଦଣ୍ଡ ବଢ଼ିଯିବା ନିୟମରେ ତାକୁ ହୋଇଛି ବର୍ଷେ ଜେଲ, ସେ ଯାଇଛି । କଠୋର ଏ କର୍ତ୍ତବ୍ୟର ଧାରା, ଯନ୍ତ୍ରର ଘୂର୍ଣ୍ଣନ । ଗ୍ଭଉଳ ଧରିବାକୁ ହିଁ ହେବ ।

ହାଟର ଘୋ ଘା ଶୁଭିଲ । ଗୋରୁ ଗ୍ଭଳର ଅଇଁଠିଅଁ ସଢ଼ାଳିଆ ଗନ୍ଧ ନାକରେ ବାଜିଲା । ହଠାତ୍ ବଣ ଭିତରୁ ତା ପଛକୁ ତା ପଛ ହୋଇ ମଣିଷ ବାହାରି ପଡ଼ୁଛନ୍ତି ବୋଝ, ଭାର, ଖରାରେ ବୁହାହୋଇ ଗ୍ଲୋଟ ପିଲ, ଗୋଡ ବନ୍ଧା ହୋଇ ମୁଣ୍ଡି ତଳକୁ ହୋଇ ଗୋସ୍ତ ଗୋସ୍ତ କୁକୁଡ଼ା, ନାନାବିଧ ପଣ୍ୟଦ୍ରବ୍ୟ—ଆଉ ଚଉଳ ଖୋଳରେ ଦେଖା ଦେଇ ବଣରେ ଅଦୃଶ୍ୟ ହୋଇଯାଉଛନ୍ତି ହାଟମୁହାଁ । ଶିକାର ଅତି ପାଖରେ । ରମେଶର ଗ୍ଭଡ଼ ଗୃଭିକଲା । ପଥରରୁ ପଥର ତଳକୁ ଡେଇଁ ଡେଇଁ ଗଲାବେଳେ କହିଲ, ''ବନ୍ଦୁ, ଏଥର !''

ହାଟ ପଶିଲ । କଳବଳ ଜନତା ପିମ୍ପୁଡ଼ି ପରି ମଣିଷ । ଗୁଡ଼ାଏ ରଙ୍ଗ, ଗୁଡ଼ାଏ ଗନ୍ଧ, ଗୁଡ଼ାଏ କୋଳାହଳ । ବହୁ ଗ୍ଭଳ ବର୍ଷି ହେଉଛି, ପବନରେ ସେହି ଗନ୍ଧ । ଧାଡ଼ି ଧାଡ଼ି ଗନ୍ଧ ଶୁଖୁଆ ପସରା । ମାଛ ବେପାରିଛନ୍ତି, ମଣିଷ ବେପାରିଛନ୍ତି । ପାଣ ବଣରୁ ଚୋରା ମଦର ଗନ୍ଧ ।

ଧାଉଡ଼ା କୁକୁର ପରି କୁଷ୍ଠରୋଗୀ, ଯକ୍ଷ୍ମାରୋଗୀ, ଖାସୁଲ ଖାସୁଲ କରି ପିଠିରେ କୁଳା ପରି, ଡାଳି ପରି ଅଗ୍ରାଏ ଲେଖା କଞ୍ଚା ଯକ୍ଷ୍ମ ଘା, କଳା କଳା ପୋତକ ପାଖକୁ ପ ଖ ଲଗି ବସିପଡ଼ିଛନ୍ତି । ଘଷାଘଷି ଠେଲାଠେଲି ହୋଇ ବୁଲୁଛି ଲୋକ, ପୁରୁଷ, ସ୍ତ୍ରୀ ।

ଦେହରେ ହିଁ ମିଶେଇ ଅନୁଭବ କରିପାରନ୍ତି । ଏବେ ଏ ନଟଖୋଲା ସନ୍ଧ୍ୟାରେ ପିଲାଦିନ ମୁହୂର୍ତ୍ତିକ ପାଇଁ ଫେରି ଆସନ୍ତାକି—ରଜା ପିଲାଟିଏ ଆପେ ଆସି ତାଙ୍କ ଆଗରେ ଗୋଡ଼ ଭାଙ୍ଗି ଦାନ୍ତ ନେଫଡ଼ି ଠିଆ ହେଇଚ ।

ବନମବାବୁ ମାପିଚୁପି ଧୀରେ ଧୀରେ କହିଲେ, ଦେଖନ୍ତୁ ମୁଁ ବି ଭାବିଚି । କାଲି ହଠାତ୍ ଗୋଟାଏ ଆଗ୍ରହରେ ସିନା ମୁଁ କହିଦେଲି । ବାସ୍ତବରେ ଦରମା ଗଣ୍ଡାକରେ ମୋ ପରିବାର ସାରାକୁ ପୋଷିବାକୁ ହୁଏ ମୋତେ । ଆଠଶହ ଟଙ୍କା ବି ବହୁତ ବେଶୀ ମୋ ପାଇଁ । ପାଞ୍ଚଶହରେ ହେଇ ଯାଆନ୍ତା ଯଦି ।

ଅନ୍ଧାରରେ ରାଜାଙ୍କ ମୁହଁ ଦିଶୁଥିଲା । ସେଇମିତି ନମ୍ର ଗମ୍ଭୀର ଗଳାରେ କହିଲେ—ଆପଣ ଯେତିକ ଖୁସି ହୁଅନ୍ତୁ, ସେଥିରେ କିଛି ମନେ କରିବାର ନାହିଁ । ମୁଁ ଦୁଃଖିତ ଯେ ଆପଣଙ୍କୁ ଜନ୍ମଦିନ ଉପହାର ରୂପେ ଦେଇପାରୁନାହିଁ । ଗୁଡ଼ନାଇଟ୍ ।

ରାଜା ଗଲାପରେ ନାଲି ଜାମା ପଗଡ଼ି ଲୋକଟିଏ ବନମବାବୁଙ୍କୁ ପରିଚିତ ବନ୍ଧୁକଟି ଆଣି ଦେଇଗଲା, କହିଲା—ସଫା କରି ଅଏଲିଂ କରି ଦେଇଛି । କ୍ୟାଟ୍ରିଜ୍ କିଛି ବି ପଠାଇଛନ୍ତି ରାଜାସା'ବ ।

ବନମବାବୁ ବାରଣ୍ଡାରେ ଋଜହୋଇ ବସିବାର ଅଧଘଣ୍ଟା ଯାଇଥିବ କି ନାହିଁ ବାରଣ୍ଡା ତଳୁ ହରିଣ୍ ଗୁପ୍ତାଙ୍କର କେ—କେଉଁଆ ସ୍ୱର ଶୁଭିଲା—ଆଜ୍ଞା ନମସ୍କାର, ଆଜି କେମିତି କ୍ଲବ ଆଡ଼େ ଯାଇ ନାହାନ୍ତି ?

ଅନ୍ୟ ଦିନ ପରି ଏଇ ସ୍ଥାନୀୟ ବ୍ୟବସାୟୀ ତଥା ନେତାଟିକୁ ବନମବାବୁ ଶୀତଳ ସମ୍ବର୍ଦ୍ଧନା କଲେ । ପାଖ ଚଉକିରେ ବସି ସେ ଯାଏଁ ଟେବୁଲ ଉପରେ ରହିଥିବା ବନ୍ଧୁକଟି ଉଠାଇ ହରିଣ ଗୁପ୍ତା କହିଲେ—ଏଇ ବନ୍ଧୁକଟି କିଣିଲେ ଆଜ୍ଞା ରାଜା ସା'ବ ଠୁ ?

ବନମବାବୁ ସମ୍ମତିରେ ମୁଣ୍ଡ ଲାଡ଼ିଲେ । ଉଦ୍‌ଗ୍ରୀବ ଆଗ୍ରହ ଗଳାରେ ହରିଣ ଗୁପ୍ତା କହିଲେ ଏଇ ଆସୁଆସୁ ରାଜା ସା'ବ ସାଙ୍ଗେ ଦେଖାହେଲା । ଆପଣ ସତରେ ଏମିତି ଠିକଗଲେ ଆଜ୍ଞା ?

ବନମବାବୁ ଏ ଅନଧିକାର ଚର୍ଚ୍ଚାରୁ ଆଗନ୍ତୁକଙ୍କୁ ନିବୃତ୍ତ କରିବାକୁ କହିଲେ—ମୁଁ ଏଇକ୍ଷଣି କ୍ଲବ ଆଡ଼େ ଯିବାକୁ ବାହାରୁଥିଲି । ଚାଲନ୍ତୁ ଯିବା ।

ବନମବାବୁ ଜାଣନ୍ତି ଏ ଭଦ୍ରଲୋକଙ୍କର ରଜାଘରଆସକୁ ତଥା ରଜାର ଶିକାର ଟ୍ରିପ୍‌ମାନଙ୍କୁ ପ୍ରାୟ ଯାତାୟାତ ରହିଥାଏ । ସିଦା କଥାଟା ଶୁଣି ନଥିବା

ପରି ହରଣ୍ ଗୁପ୍ତା ପୁଣି କହିଲେ—ଆପଣଙ୍କଠୁଁ ଆଠହଜାର ଟଙ୍କା ମାଗିନେଲି ଆଜ୍ଞା ଗଲା ସପ୍ତାହ ଏଇ ଦଦରା ବନ୍ଧୁକଟା ପାଇଁ ।

ବ୍ରହ୍ମବାବୁ ଏଥର ଆଲୋଚନାଟି ଆଗେଇବାକୁ ବାଧ୍ୟ ହେଲେ—ଆଠହଜାର ? କିଏ କହିଲା ଆପଣଙ୍କୁ ?

କାହିଁକି, ନିଜେ କହିଲା ସେ ରଜାର ବେଟା । ମୋଠି ତା'ର ଟଙ୍କା କିଛି ବାକି ଅଛି ତ···

ବ୍ରହ୍ମବାବୁ କହିଲେ—ଆଶ୍ଚର୍ଯ୍ୟ, ପାଞ୍ଚଶହ ବୋଲି କଥା ପଡ଼ିଲା ଏଇଠି ଅଧଘଣ୍ଟା ତଳେ । ଲୋକଟାର ମୁଣ୍ଡଫୁଣ୍ଡ ଖରାପ ନା କ'ଣ ।

ହରଣ୍ ଗୁପ୍ତା ଶେଷ ବାକ୍ୟଟି ଉପରେ ମନ୍ତବ୍ୟ ନଦେଇ ଦାମ୍ ବିଷୟରେ ପୁରା ସମ୍ମତ ହେଲେ । ଟେବୁଲରେ ମୁଠାରଖି କହିଲେ ଠିକ୍ ଆଜ୍ଞା, ସେଇ ପାଞ୍ଚଶହରୁ ପଇସାଟିଏ ବେଶୀ ଦେବେନାହିଁ । ଆଉ ଆପଣ ସିନା ସଉକ୍‌ରେ ନେଉଛନ୍ତି, ଏ ବନ୍ଧୁକଟାର ମୂଲ୍ୟ ବା କ'ଣ । ଆଗରୁ ତା'ର ଭଲ ବନ୍ଧୁକ ସବୁ କେତେ ଶସ୍ତାରେ ନେଇଯାଇଛନ୍ତି ଲୋକ । ସେ ସେମିତି ଦରଦାମ୍ ଦଶ ହଜାରରୁ ଆରମ୍ଭ କଲେ ବୁଝିଲେ, ଦେଶୀ ଦ୍ରବ୍ୟ ପିଇ ପିଇ ଯେତେବେଳେ ତା'ର ବିଲାତି ଟୋପେ ପିଇବାକୁ ମନହୁଏ, ତା ଉପାସରୁ କିଛି ଗୋଟାଏ ବିକି ପକାଏ—କିଣିବାକୁ ଲୋକଟିଏ ମିଳିଲେ ହେଲା । ଆଉଥରେ ବିଲାତି ପିଇବା ଝୁଙ୍କ୍ ତା'ର ଚଢ଼ିଛି ମାନେ ଆପଣ ଯେତିକି କହିବେ ସେତିକିରେ ସେ ଦେବ, ଆପଣ ନ ଟକିଲେ ହେଲା ।

ପ୍ରାୟ ଛଅ ଦିନ ପରେ ବ୍ରହ୍ମବାବୁ ବୁଲିବୁଲି କରି ସଞ୍ଜବୁଡ଼କୁ ଫେରୁଚନ୍ତି, ରେଷ୍ଟ ହାଉସ୍ ବାରଣ୍ଡାରେ ରାଜାସାହେବଙ୍କ ପତଳା ହାଡ଼ୁଆ ଚେହେରା ବାରିଲେ, ଟିକିଏ ଅଧିକ ଯତ୍ନରେ ଧରିଛନ୍ତି ବେଶ ପୋଷାକ ପିନ୍ଧିଛନ୍ତି । ନମସ୍କାର ପରେ ରାଜା ତାଙ୍କ ଅଦ୍ଭୁତ ଭାବେ ଭାବ ବିହ୍ୱଳ ଅଥଚ କାର୍ଟୁନ ପରି ଅକାରଣ ଆମୋଦ୍‌ଜନକ ମୁହଁରେ ସିଠୁଆ ହସଟିଏ ଫୁଟାଇ କହିଲେ—ଗୋଟିଏ ଜରୁରୀ କଥା ଥିଲା ।

ବ୍ରହ୍ମବାବୁଙ୍କୁ କ୍ରମଶଃ ଏ ଅଖାଡ଼ୁଆ ଲୋକଟିର ଗୁମ୍ ସୁମ୍ ଉପସ୍ଥିତି ଆଉ ଭଲ ଲାଗୁ ନଥିଲା । ହାତ ଘଣ୍ଟାକୁ ଅନେଇ ବ୍ୟସ୍ତ ଥିଲା ପରି କହିଲେ—କହନ୍ତୁ ।

ରାଜା ଟିକିଏ ବେଳଭାବି ଠିକ୍ ଭାଷା ମନେ ମନେ ଅଣ୍ଡାଳିଲା ପରି ବ୍ୟକ୍ତ କଲେ—ବନ୍ଧୁକ ମୁଁ ଆପଣଙ୍କୁ ଉପହାର ଦେଇ ପାରିଲି ନାହିଁ, ଏଇଟା

ମୋ ପାଇଁ ଲଜ୍ଜାର କଥା । ତେବେ ଆପଣ, ମୋ ଭିତରେ ଖୁସିରେ କେତେ ଧାଆ ନିଆ ହେଲା, ସେ କଥା ଯଦି ଆମ ଭିତରେ ରହିପାରନ୍ତା···

ବିକ୍ରମବାବୁ ବୁଝି ନପାରିଲା ପରି ରଜାଙ୍କ ମୁହଁକୁ ଗ୍ୱହିଁଲେ, ଓଦାଳିଆ ହସଟିଏ ତାଙ୍କ ଓଠ ଠିଁ କେବଳ ଭରିଥିଲା । ମୁହଁରେ ଆଉ କୋଉଠି ହସର ଚୁଲିକାଏ ବି ନଥାଏ, ଖାଲି ହସର ଭିଙ୍ଗାପଣରେ ଯେମିତି ଓଠ ଦୁଇ ଜଣ ତଳକୁ ନଇଁ ପଡ଼ୁଥାଏ । କହିଲେ—ଆପଣ ନିଶ୍ଚୟ ଅସ୍ୱୀକାର କରି ପାରିବେ ନାହିଁ ମୋ ବନ୍ଧୁକଟାର ଦାମ୍ ପାଞ୍ଚ ଶହ ନୁହେଁ, ତାର ଅସଲ ଦାମ ଆଠ ହଜାର । ଆପଣ କିଣିଲେ ବୋଲି କହିବେ ଯଦି ସମସ୍ତଙ୍କୁ କହନ୍ତୁ, କିନ୍ତୁ ବନ୍ଧୁକଟାର ଦାମ୍ ଆଜ୍ଞା ଆଠ ହଜାର ।

ରାଜାଙ୍କ ଗଳାରେ ଏତେ ନମ୍ର ନିବେଦନ ଥିଲା ଯେ ତାଙ୍କୁ ଆଘାତ ଦେବା କଥା ବିକ୍ରମବାବୁ ଭାବିପାରିଲେ ନାହିଁ ।

ଗେଟ ପାଖେ ବିଦାୟ ନେଲା ବେଳକୁ ରାଜାସାହେବଙ୍କ ସଙ୍ଗେ ହାତ ମିଳାଇ ପୁରୁଣା ବନ୍ଧୁ ପରି ବିକ୍ରମବାବୁ କହିଲେ—ଖାମ୍ ଖିଆଲୀ ହୋଇ ମୁଁ ସଭରେ କେତେବେଳେ କ'ଣ କହି ପକାଏ । ତେବେ ଆପଣ ନିଶ୍ଚିନ୍ତ ରହନ୍ତୁ । ମୁଁ ବନ୍ଧୁକଟି ଉପହାର ପାଇଛି ବୋଲି କହିବ ।

---

# ବାହାରେ ଠିଆ ହୋଇଥିବା ଲୋକମାନେ

**ଶ୍ରୀ ଜଗଦୀଶ ମହାନ୍ତ**

ତାକୁ କେଉଁଠିକୁ ନେଇଯିବା ପାଇଁ କେହି ଯେମିତି କହୁଯାଉଛି ଓ ପ୍ରତିଥର ସେ କାହାଁକୁ ଯେମିତି କହୁଚ; ମୋତେ ଡରମାଡ଼େ । ମୋର ଭୀଷଣ ଭୟ । ଏଇ ଯେ ସେ ଭଙ୍ଗା ତକ୍ତପୋଷ ଉପରେ, ମସିଆ ରେଜେଇ, କନ୍ଥା ଓ ଚଦର, କମ୍ବଳ ଉପରେ, ଗୋଟେ ଧଳା ତସର ଚଦର ଘୋଡ଼େଇ ହୋଇ ବନ୍ଧୁ ଉପରେ ଝୁଙ୍କି ପଡ଼ିଥିଲା, ଯେତେବେଳେ ପାଖରେ ସାନ ଭଉଣୀ ପରମିତା ଶୋଇ ପଡ଼ିଥିଲା ଓ ଆର ଘରେ ବଡ଼ ଭଉଣୀ ସଞ୍ଚୟିତା ହୋମୱର୍କ କରୁଥିଲା—ସେତେବେଳେ ଢୁଲଉ ଢୁଲଉ ବି ସ୍ୱପ୍ନ ଦେଖିଥିଲା ମୃଣ୍ମୟୀକୁ । ତା'ଠୁ ଦୁଇ ବର୍ଷର ଜ୍ୟେଷ୍ଠ, ମୃଣ୍ମୟ—ତା'ର ମାମୁଁ ତାକୁ ହାତ ଧରି ନେଇଯାଉଛି କେଉଁ ଏକ ଧଳା କୁହୁଡ଼ିଘେରା ପର୍ବତର ସବୁଜ ସ୍ତର ଉପରକୁ । ଏଭଳି ସ୍ୱପ୍ନ ତ ତା'ର ଜନ୍ମ-ଆଜନ୍ମ ସହଚର । ଏତେ ସ୍ୱପ୍ନ ପାଇଁ ରାତି କାହିଁ ? ତଥାପି ସ୍ୱପ୍ନ ଦେଖେ ଠିକ୍ ପ୍ରତିଥରର ସ୍ୱପ୍ନରେ ମୃଣ୍ମୟ ତାକୁ ନେଇଯାଏ କେଉଁ ଦୂର ନିର୍ଜନ ନିକାଞ୍ଚନ ଜାଗାକୁ । ଆଉ ସ୍ୱପ୍ନର ତ ନାହିଁ କୌଣସି ଟ୍ରେନ୍ ଟିକେଟ୍ ଯେ ସେ ମନେରଖିବ—ତାକୁ ପୁଣି ଫେରିବାକୁ ପଡ଼ିବ ଧୂଳି ଓ ଧୂଆଁର ନର୍କଖୋଲକୁ ବୋଲି । ଦୃଶ୍ୟ ଭଙ୍ଗା ଗଡ଼ାର ଝେଲରେ ସ୍ୱପ୍ନ ଭୁଲିଯାଏ ନିଜକୁ । ଅଥଚ ତଥାପି ନବନୀତା ସ୍ୱପ୍ନ ଭିତରେ ବି ଚିଲବିଲେଇ ଉଠେ; ମୋର ଭୀଷଣ ଭୟ । ମୋତେ ଡର ମାଡ଼େ ।

ଚିଲବିଲେଇ ଉଠେ ଓ ନିଦ ଭାଙ୍ଗି ଯାଏ । ନିଜକୁ ଶୁଏଇଦେଇ ଭଙ୍ଗା ଚୂଲ ତଳେ, ଏଇ ଭଙ୍ଗା ତକ୍ତପୋଷ ଉପରେ, ମସିଆ ବିଛଣାରେ ସେ ବାହାରକୁ ଯାଏ । ଚନ୍ଦ୍ରମା ରାତି ହୋଇଥିଲେ—ପୁଣି ଏଇଭଳି ଡିସେମ୍ବରର ଶୀତୁଆ ଜହ୍ନର ଜୁଇରେ ତାଳ ଖଜୁରିର ଜୁଇଜୁଇକା ଆଲୁଅ ଯଦି ପଡ଼ିଥାଏ, ସେ ଅସହାୟ ହୋଇପଡ଼େ ; ସାଇକ୍ଲୋନ୍ ଭଳି ଧାଇଁଆସେ କୁଆଡ଼ୁ ଗୋଟେ ପବନ ଯେ—ଭାଙ୍ଗି ପଡ଼େ ତା'ର ସବୁ ସ୍ଥିତିଶୀଳତା, ବର୍ତ୍ତମାନର ସବୁ ସ୍ୱପ୍ନ, ସବୁ ସୁଖ । ସବୁ ଥର ଅତୃପ୍ତି ଆଡ଼କୁ ଅଧିଠା ଗ୍ଲାସ୍ ବଢ଼େଇ ଦିଏ, ତଥାପି ଏତେ ପ୍ରାପ୍ତିର ଜଙ୍ଗଲରେ ଜନ୍ମ ନିଏ ଅପାର୍ଥିବ ଦୀର୍ଘଶ୍ୱାସଭରା ରାତିଟିଏ ।

କ'ଣ କରିବ ଆଉ ? ମଣିଷ ତ ଶବ୍ଦ ଦେଇ ସୃଷ୍ଟି କରେ ସ୍ୱପ୍ନ ପାଇଁ ଘରଟିଏ, ଆଉ କେହି ବାସ୍ତବତାର କୁରାଢ଼ି ଦେଇ କାଟିଦିଏ ଭୌତିକ ଅନ୍ଧାର; କୁହେ : ଉଆର ବି ଲୋକାଳୟ, ପ୍ରେମିକ ସହର, ମଣିଷର ଘର ।

ନବନୀତା ଜାଣେ ଏ ସବୁ । ତା'ର ଅଛି ଅନେକ ଅପାଉଣା ପ୍ରତିଶ୍ରୁତି । ବିତିଯାଉଛି ବାର ମାସ । ସେ ମନକୁ ମନ କୁହେ : ମୋର ଭୀଷଣ ଭୟ । ମାମୁଁ, ଏଇଟା କ'ଣ ପାପ ? ମୁଁ ବୋଧେ ଖୁବ୍ ଖରାପ ହେଇଗଲିଣି ।

ଜାଣେ; ଏ ସବୁ କହିଲେ ମୃଣ୍ମୟ ମନ ଦୁଃଖ କରିବ । ମୁହଁଟାକୁ ହାଣ୍ଡି ଭଳି କରି ରଖିବ । ମୃଣ୍ମୟର ଏମିତି ମୁହଁ ଦେଖିଲେ ତାକୁ ଭୀଷଣ ଖରାପ ଲାଗେ । ଗୋଟେ ଅଦ୍ଭୁତ ମମତ୍ୱ ଭାଙ୍ଗିପଡ଼େ ଅବୁଝା ପିଲାଟା ଉପରେ । କିନ୍ତୁ କେମିତି ବୁଝେଇବ, କେମିତି ବୁଝେଇବ ମୃଣ୍ମୟକୁ ଯେ ତାର ଶିରା ପ୍ରଶିରାରେ ଅଛି କେତେ ଘୃଣା, କେତେ ବ୍ୟଥା, ବିକ୍ଷୋଭ ଓ କେତେ ପ୍ରତାରଣା । ତଥାପି କହି ପାରିନି କେବେ ଏ ରୋଗିଣା ହୃଦୟ ତଳେ ଅଛି କେତେ ଲୋଭ ।

ମୃଣ୍ମୟ ବେଳେବେଳେ ଯୁକ୍ତି କରିବାକୁ ଯାଇ କୁହେ : ପାପ ପୁଣ୍ୟ ସବୁ ମଣିଷ ଦ୍ୱାରା ତିଆରି, ମଣିଷ ଉପରେ ଲଦାଯାଇଥିବା ମୂଲ୍ୟବୋଧ ।

ନବନୀତା କୁହେ : ମାନୁଚି, ମୂଲ୍ୟବୋଧ, ଆରୋପିତ ମୂଲ୍ୟବୋଧ—କିନ୍ତୁ ମଣିଷ ତ ସଂସ୍କାରର ଦାସ । କେମିତି ସଂସ୍କାରକୁ ଭୁଲିବ ମାମୁଁ ? ଆମ ସମାଜରେ ତ ଏସବୁ ଚଳେନି ।

କିନ୍ତୁ ଯୁକ୍ତି କେତେଦୂର ପର୍ଯ୍ୟନ୍ତ କୁହ ? ଇଚ୍ଛାର ପାହାଡ଼ର ଗ୍ରୁଡିରୁ, କାମନାର ଝରଣା ଓହ୍ଲାଏ, ଶୋଷର ନାଆଁରେ ଢାଳିଦିଏ ଅଲୌକିକ ସେବାର ମମତ୍ୱ । ଏଇ ଧାରୁଆ ପାଣି ସୁଅ ଗ୍ରୁଡରେ ନେଇ କର୍କଶ ଯୁକ୍ତିର ବ୍ୟାଶକେଡ଼ ପଥର ଉପରେ ବାଳି ହୋଇ ଗଳିଯାଏ ନଦୀ ଖୋଜି ଖୋଜି । ଏତେ ହଁ ହଁ ନାହିଁ ନାହିଁର ଦ୍ୱନ୍ଦ୍ୱ ଭିତରେ ବି ଭଙ୍ଗାଗୁଳ ତଳେ ନିଦଭରା ନବନୀତା ଏକୁଟିଆ ଚେଇଁ ରହିଥାଏ । ନିଜକୁ ପ୍ରଶ୍ନ କରେ : ଏଇଟା କ'ଣ ପ୍ରେମ ? ପ୍ରେମ କ'ଣ ଯେ ?

ଆଜକୁ ଗୃଣି ପାଞ୍ଚ ବର୍ଷ ତଳେ, ହାଇସ୍କୁଲରେ ପଢୁଥିବା ସମୟରେ ହିଁ ଟ୍ୟୁସନ ମାଷ୍ଟରଙ୍କୁ ଭଲ ପାଇ ବସିଥିଲା ଯେ ନବନୀତା, ସେଇଟା କ'ଣ ପ୍ରେମ ଥିଲା ? ଆଜି ତ ସେଇ ଟ୍ୟୁସନ ମାଷ୍ଟର ହେମନ୍ତ ସାରଙ୍କ ପ୍ରତି ଅଛି ଖାଲି ଘୃଣା ଓ ଅଶ୍ରଦ୍ଧାର ସେଇ ପ୍ରେମଟା ମନେହୁଏ ଏବେ ଖାଲି ପିଲାଳିଆମି । କେମିତି ଗୋଟେ ଗ୍ଲାମରର ମୋହ, ଯେମିତି ରାତିର ଟ୍ରେନ୍‌ର ବଝରାରୁ ପ୍ରତିଟି ନିକୃଷ୍ଟ ସହର ବି ଆଲୁଅର

ଗ୍ରାମରରେ, ଝଲମଲ କରି ମହମହାୟ ହୋଇଉଠେ—ଯେମିତି ଥିଲା ତା'ର ହେମନ୍ତ ମାଷ୍ଟର ସହ ପ୍ରେମ । ଅଥଚ ଏଇ ଯେ ମୃଣ୍ମୟୀ, ତା'ଠୁ ଦି'ବର୍ଷର ସାନ୍ । ତାକୁ ପ୍ରଲୋଭିତ କରି ଡାକି ନେଉଛି ସବୁଜ ସ୍ୱପ୍ନର ଉପତ୍ୟକାକୁ—ଏଇଟା କି କ'ଣ ମୋ'ହ ନୁହଁ, ପ୍ରେମ ? ହୁଏତ ଏଇଟା ବି; ସବୁ ପ୍ରେମ ହିଁ ମୋ'ହ । ତଥାପି ମନଟା ମାନିବାକୁ ଚାହେଁ ନା । ନାହିଁ ନାହିଁ କରି କେଉଁଠି ଯେମିତି ପ୍ରେମଟା ଅଛି । ଚିତ୍ତ ତଳରେ ଭାସି ଆସେ ପ୍ରତିଧ୍ୱନି : ଅଛି ଅଛି ପ୍ରେମ ଅଛି ଓ ମୃଣ୍ମୟୀ ତାକୁ ଦେଇଯାଏ ପ୍ରେମର ଗୋଲାପ ଫୁଲ । ଗୋଲାପରେ ଥାଏ ଝାଳର ଉତ୍କଟ ଗନ୍ଧ । ନବନୀତା ଚିଲବିଲେଇ ଉଠେ : ଏଇଟା ପାପ । ମୋର ଭୀଷଣ ଭୟ । ପ୍ରେମ ବୋଲି କିଛି ନାହିଁ ଦୁନିଆରେ ।

ଆଉ ଦେଖ, ଠିକ୍ ସେଇ ସମୟରେ ପ୍ରତିଧ୍ୱନି ଉଠେ ଚିତ୍ତ ତଳେ : ଅଛି ଅଛି, ପ୍ରେମ କେଉଁଠି ଲୁଚି ବସିଛି । କିନ୍ତୁ କେଉଁଠି ଯେ ? ଗୋଟେ ଆବେଗରେ ବଢ଼େଇଦିଏ ସେ ହାତ ମୃଣ୍ମୟୀ ଆଡ଼କୁ । ମୃଣ୍ମୟୀ ଯେମିତି ତା'ର ଆଶା ଆକାଂକ୍ଷାର ଟ୍ରେନ୍ ଟିକେଟ । ଓଃ, ସେ ଭୁଲିଯାଇଛି ହେମନ୍ତ ମାଷ୍ଟରଙ୍କୁ । ତାକୁ ନେଇଯାଅ ଫଗୁଣ ମାସର ଦେଶକୁ—ନିର୍ଜନ ଫଗୁଣ ମାସ ଯେଉଁଠି ବର୍ଷସାରା ଭୁଲିବାକୁ ଦିଏ ତା'ର ଅପାଉଣା ପ୍ରତିଶ୍ରୁତି ଓ ବିତିଯାଇଥିବା ଦୀର୍ଘ ବାର ମାସକୁ ।

କିନ୍ତୁ କେମିତି ଭୁଲିବ କୁହ ? କେମିତି ଲିଭେଇଦେବ ମନର ସିଲେଟ ଦେହରୁ ଅତୀତର ସବୁ ଗାର, ସ୍ମୃତିର ସମସ୍ତ ଅକ୍ଷର ? କେମିତି ଭୁଲିବ ତା'ର ସେଇ ସିନେମାର ପ୍ରଚାର ଗାଇ ଗାଇ ଯାଉଥିବା ରିକ୍ସା ପଛରେ କାଗଜ ଟୋକେଇ ଯାଉଥିବା ଶୈଶବକୁ ? କେମିତି ଭୁଲିବ ସେ ବେଲୁନ୍ ଉପରେ ହାତ ଘଷି ଘଷି ଶବ୍ଦ ତୋଳୁଥିବା ଶୈଶବର ସ୍ମୃତି ? ଏତେ ସ୍ମୃତି—ମା, ଅପା, ଭାଇ ସହ ତା'ର ଏଇ କୋଡ଼ିଏଟା ବର୍ଷ କେମିତି ଭୁଲିବ । ତାକୁ ତ ନିଜ ଅଜାଣତରେ ଫେରି ଯିବାକୁ ପଡ଼ିବ ବର୍ତ୍ତମାନର ଦ୍ରାଘିମାର ଲକ୍ଷ୍ମଣଗାର ପଛରେ ପକେଇ, ସ୍ମୃତିର ନୌକାରେ ଆହୁରି ପଛକୁ ବାରମ୍ବାର । ଅଥଚ ମୃଣ୍ମୟୀ ତାର ହାତ ଧରି ନେଇଯିବ ଏମିତି ଗୋଟେ ଜାଗାକୁ—ଯେଉଁଠୁ ଦୂରେଇଯିବେ ଆଶୈଶବ ସାଥୀମାନେ—ମା' ଅପା, ଭାଇ ।

ଭୟରେ ଶିହରିଉଠି ନବନୀତା କହିପକେଇବନି କି ଯେ ତା'ର ଭୀଷଣ ଭୟ ହୁଏ ବୋଲି ? କହିପକେଇଲା ଓ ଫେରିଆସିଲା ମଇଳା ଦାଗ ଭରା ଦେବଙ୍କର ପୋଷ୍ଟର ଏଇ ଭଙ୍ଗା କାନ୍ଥ ଓ ଭଙ୍ଗା ଚୂଲର ପରିବେଶ ଭିତରକୁ, ଯେଉଁଠି ଭଙ୍ଗା ତକ୍ତପୋଷ ଉପରେ ଧଳା ଚାଦର ଘୋଡ଼େଇ ହୋଇ ସେ ଝୁଙ୍କି ପଡ଼ିଛି ବହି ଉପରେ,

ଆଗରେ ଡ୍ରେସର୍—ନିଆଁଠୁ ଧୂଆଁ ବେଶୀ ଯା'ର ଓ ପାଖରେ ଶୋଇଛି ପରମିତା, ଇଂରାଜୀ ବହିର ପୃଷ୍ଠା ପିଠିତଳେ ଚୁପି ହୋଇ ରହିଚି ।

ନବନୀତା ଉଠି ବସି ଆଖି ମଳିଲା । ଚାରି ପାଞ୍ଚ ବର୍ଷ ହେଲା ଗୋଟେ ଶିକାରୀ ଯେ ବାଲ୍ମୀକିର ନଜରି ଫାଙ୍କି ଦେଇ ଚାଲିଆସିଥିଲା, ଏବେ ଝୁଲୁଛି ଭଙ୍ଗା କାନ୍ଥରେ, ଶରାହତ ପକ୍ଷୀଟିଏ ଯନ୍ତ୍ରଣାରେ ଛଟପଟ ହେଉ ହେଉ ଫ୍ରିଜ୍ ହୋଇଯାଇଛି, ପଦ ତଳରେ ତା'ର ସମଯୂର ଶବ । ତା' ତଳକୁ ଭଙ୍ଗା ଟେବୁଲରେ ଗଦା ହୋଇ ରହିଛି ବହିପତ୍ର । ଉପରେ ଗୋଟେ ଅଲଗୁଣି, ଚାଳକୁ ଟଙ୍ଗା ହୋଇଚି । ସେଠି କିଛି ଶାଢ଼ୀ—ଲେବାର ପୋଷ୍ଟର ତଳୁ ଯେମିତି ଉଙ୍କି ମାରେ ନକ୍ସାଲର ଧାମୀ ପ୍ରାଚୀରର କାନ୍ଥ—କେବଳ ମାତ୍ର ଏଇ ଶାଢ଼ୀ ଛଡ଼ା ଆଉ ଯାହା କିଛି ଚକ୍ ଚକ୍ ଏ ଘରେ ସେମାନେ ତିନି ଜଣ—ପରମିତା—ଶୋଇଚି, ନବନୀତା—ବସିଛି ଓ ସଞ୍ଚୟିତା ରୋଷେଇ ଘରେ । ଟୁଣଟାଣ ଶବ୍ଦ ଆସୁଚି ଯେ ଶୁଣିପାରୁନ ?

ନବନୀତା ହାଇ ମାରିଲା ଓ ପଛକୁ ଅନେଇଲାବେଳକୁ କବାଟ ଠେଲି ପଶୁଚି ସିଏ—ସିଏ ହିଁ ମୃଣ୍ମୟ—ତା'ଠୁ ଦି' ବର୍ଷର ଗ୍ରେଟ । ତା'ର ମାମୁଁ । ପ୍ରତି ରାତିରେ ସ୍ୱପ୍ନରେ ଆସି ନେଇଯାଏ ସବୁଜ ସ୍ୱପ୍ନର ଉପତ୍ୟକାକୁ—ଯେଉଁଠି ପଡ଼ି ରହିଛି ଅସରନ୍ତି ସୁଖର ମଣିମୁକ୍ତା ସବୁ—ଅଥଚ, ଏତେ ସୁଖ ଦେଖିଲେ ଭୟରେ ଶିହରି ଉଠେ ସେ । ମଣିଷର ଲୋଭରେ, କ୍ଷୋଭରେ ଛିନ୍ନ ଭିନ୍ନ ବିମର୍ଷ ଶିଶିରର ଲୁହ ଭଳି ସୁଖ ।

ତଥାପି ମୃଣ୍ମୟକୁ ଦେଖିଲେ ତା'ର ଛାତି ଭିତରେ ହୁଇସିଲ୍ ବଜେଇ ଧାଇଁଯାଏ ପ୍ରେମର ରେଲଗାଡ଼ି । ସେ ହସେ ଓ ମନକୁ ମନ କୁହେ : ଏତେ ସ୍ୱପ୍ନ ଯେ ଦେଉଛ ମାମୁଁ, ଏତେ ସ୍ୱପ୍ନ ପାଇଁ ରାତି କାହିଁ ?

ଏଥର ବି ମୃଣ୍ମୟକୁ ଦେଖି ହସିଲା ନବନୀତା, ଶ୍ରୋବ୍‌ର ଫୁଲ ଭଳି ତାଜା ହସ । ମୃଣ୍ମୟ ଠିଆ ହେଲା ଓ ତା'ର ଓଠରେ ବି ସୁଖରେ ଝଲମଲ ହାଃ ହାଃ ନୀରବ ପ୍ରତିଧ୍ୱନି । ମୃଣ୍ମୟ ଆଗେଇ ଆସିଲା ନବନୀତା ଆଡ଼କୁ । ସବୁବେଳେ ସେ ପୃଥିବୀରେ ଗୋଟେ ସୁଖ ଖୋଜି ବୁଲୁଚି । ନବନୀତା ତା'ର ବତ୍ତିଧର ।

ସଞ୍ଚୟିତା'ର ଛାତି ଭିତରେ କାନ୍ଥ ଧସି ପଡ଼ିବାର ଶବ୍ଦ । ପାଚିଲା ଧାନର କ୍ଷେତରେ ନିର୍ଲିପ୍ତ ହାଓ୍ୱା ଭଳି ଚୁଲୁଚୁଲୁ ହଠାତ୍ ଫସଲ ତୋଳା ସରିଥିବା ଖାଁ ଖାଁ ଜମିର ଦୀର୍ଘଶ୍ୱାସ ବ୍ୟାକୁଳ କରି ପକାଏ ଯେମିତି ସେମିତି ବ୍ୟର୍ଥତାର ପଶରା ଆଖିନେଇ ଅନେଇଲା ସଞ୍ଚୟିତା ଚୁଲି ଉପରର କରେଇକୁ ଓ ଅଧଆରେ କରଚୁଲି ଧରି ଝଡ଼ ଝଡ଼ କଲା । ଗୋଟେ ସଙ୍କ୍ଷିପ୍ତ ଆଲୁଅର ଉଷ୍ମ ଡିବିରିଟିଏ ଜଳୁଛି ।

ଜିଳୁନିତ, ଅନ୍ଧାରକୁ ଆହୁରି ବେଶି ଅନ୍ଧାରୁଆକରି ତୋଳୁଛି । ସିଅର୍ସି ତାରି ଆଗରେ ଅନ୍ଧାରି, ପିଛରେ ଅନ୍ଧାରି । ଲକ୍ଷ ଲକ୍ଷ ଯୋଜନ ମାଇଲ୍ ଲମ୍ବ । ଅନ୍ଧାରି ଭିତରେ ତା'ର ଚବିଶି ବର୍ଷର ବୟସଟା ଆସ୍ତେ ଆସ୍ତେ ହଜି ଯାଉଛି । ଅନୁଭବ କରିପାରେ ତା' ଭିତରୁ ବେଲଗ୍ଲେରେ କିଏ ମାଂସ ଖୋଲି ନେଉଛି । ସବୁବେଳେ ଗୋଟେ ଅସ୍ଥି ଭଙ୍ଗା । ମନଟା ଗୁରେଇ ଭୁରେଇ ହେବ । ପାନଅଳ ଦାନ୍ତ ସନ୍ଧିରେ ଜମୁଥିବା ମଇଳା ଭଳି—ସବୁ ଶୂନ୍ୟତା ବ୍ୟର୍ଥତାରି ଦୁଃଖ ଜମା ହେଉଥିବ ତା' ଦେହରେ ।

ଅଯଥାରେ, କରେଇରେ ହଳଦୀପାଣି ଭିତରେ ଶିଝୁଥିବା ଆଳୁକୁ କରଚୁଲିର ବଚ୍ଛାରେ ଦ୍'ଖଣ୍ଡ କରୁ କରୁ ସେ ପ୍ରଶ୍ନ କରିବ ନିଜକୁ : ଜୀବନଟା ଯଦି ଅର୍ଥହୀନ— ବଞ୍ଚିରହି ଲାଭ କ'ଣ ଯେ ?

ଏମିତି ଗୋଟେ ପ୍ରଶ୍ନର ଉତ୍ତରି କେବେ ମିଳେନା ଓ ବେଳେବେଳେ ସେ ଠିକ୍ କରି ନିଏ, ହେଇଗଲା ଏଥର । ଯା ପରେ ବଞ୍ଚିରହି କିଛି ଲାଭ ନାହିଁ । ସବୁ ସମ୍ଭାବନାକୁ ପୁରୁଣା ଟିକେଟ ଭଳି ଫିଙ୍ଗିଦେଇ ଗୋଳାରେ ଦଉଡ଼ି ଲଗେଇ ଝୁଲିପଡ଼ିବା ଭଲ ।

ଜୀବନଟା ଏତେ ଅର୍ଥହୀନ, ତଥାପି ମଣିଷ ବଞ୍ଚିରହେ—ଧୂସର ହୃଦୟ ନେଇ—ବୈଶାଖର ଆଖି ଭଳି ଉଜୁଡ଼ା ବିଲ ପ୍ରଥମଥର ବୃଷ୍ଟି ବର୍ଷିଥାଏ ଯେମିତି ନୂତନ ଫସଲ । ଘୋଡ଼ା ଟାପୁର ଶବ୍ଦ ଭଳି ସ୍ମୃତି ଗୁଡ଼ାକ ରକ୍ତରେ ପ୍ରତିଧ୍ୱନି ତୋଳେ । ଶୂନ୍ୟତାର ମଗ୍ନ ଅନୁଭୂତି,-ସ୍ମୃତିଭରା ଦୂର ଚନ୍ଦନ ବନର ଗନ୍ଧ ଆଣେ । ବର୍ଷା ଭିଜା ବଉଳ ସନ୍ଧ୍ୟାର ଗନ୍ଧରେ ସମୁଦ୍ରର ଢେଉସବୁ ମଣିଷର ହୃଦୟର ରକ୍ତେ ରକ୍ତେ ଅସଂଖ୍ୟ ଉଜ୍ଜଳ ଭୋର ଭଳି, ତୀବ୍ର ଆଶାରେ ମଣିଷକୁ ବୃଝେଇ ରଖନ୍ତି । ସଞ୍ଚିତା ପ୍ରଥମଥର ଗଳାରେ ହାତ ଦେଇ ବ—ପର ମୁହୂର୍ତ୍ତରେ ଦର୍ପଣ ଆଗରେ ଠିଆ ହୁଏ ନିଜର ମୁହଁର ମଇଳାକୁ ଝାଡ଼ିଦେଇ । ଜୀବନଟା ଏମିତି ବଚନ ।

ବଚନ ହିଁ ତ । ସଞ୍ଚିତାକୁ ଦେଖ । ସେ ବଞ୍ଚିରହି କ'ଣ କରିବ ? ଚବିଶି ବର୍ଷ ହେଲାଣି । ବି.ଏ. ପାଶ୍ କରିଥିଲା ଗ୍ରୁଇ ବର୍ଷ ତଳେ । ଏବେ ପାଠ ବନ୍ଦ । ଗୃହକାମ ଖୋଜୁଛି, ମିଳୁନି । ଦ୍'ବର୍ଷ ହେବ ଗାଁରେ ବସିଥିଲା । ଏବେ ଟାଇପ ଶିଖିବାକୁ ସହରକୁ ଆସି, ଏଠି ପ୍ରେକ୍ଟିସ କରୁଛି । ସକାଳ ଓଳି ଅବଶ୍ୟ ଯାଏ, ରେମିଙ୍ଗଟନ ମେସିନର କଳାବ ଅକ୍ଷରଗୁଡ଼ାକ ଉପରେ ଆଙ୍ଗୁଳି ବୁଲେଇ ଆଣେ । ଖୁବ୍ ନିର୍ଲିପ୍ତ ଭାବରେ ଇନଷ୍ଟିଚ୍ୟୁଟକୁ ଯାଏ ଓ ଫେରେ । ସେ ଜାଣି ପାରୁଛି—ତା'ର ନାଁ ଗୃହକାମ ହେବ, ନାଁ ବାହାଘର । ତଥାପି ବଞ୍ଚି ରହିଛି ତ ।

ସଞ୍ଚିତା ଆଉଜି ବସିଲା କାଠ ଖୁଣ୍ଟକୁ । ତା' ଭିତରେ କେଉଁଠି ସାଁଶିରେ ପଥର ପଡ଼ିବା ଭଳି କିଛି ଗୋଟେ ଅନୁଭବ କରିପାରିଲା । ଉପରେ ଚୂଳର ଛୁଣ୍ଡା କାନରୁ ଭଙ୍ଗା ସୁପାରି ଭଳି ଚୂନ, ମଇଳା ମଇଳା ଦେଖାଯାଉଚି । ହଠାତ୍ କାହିଁକି କେଜାଣି ତାଙ୍କୁ ଖୁବ୍ ଏକା ଏକା ଲାଗିଲା । ଏତେବଡ଼ ଦୁନିଆଁରେ ତା'ର ଯେମିତି କେହି ନାହିଁ । ବାପା, ମା, ଭାଇ ଭଉଣୀ—ସମସ୍ତଙ୍କ ଭିତରେ ବି ସେ ପୁରା ଏକା ! ତା'ର ନିଜର କେହି ନାହିଁ ।

ସଞ୍ଚିତାର ରକ୍ତକଣାରେ ଖାଁ ଖାଁ ନିସ୍ତବ୍ଧତାର ପ୍ରତିଧ୍ୱନି । ଧୂଆଁ ଭଳି ବିସ୍ମୃତିର ବର୍ଷାରେ ସବୁ ସ୍ୱପ୍ନ ମୁହଁଗୁଡ଼ା ପାଣିହୋଇ ଯାଉଚନ୍ତି । ତା'ର ଅସ୍ତିତ୍ୱ ବାସି ପୋଷ୍ଟର ଭଳି, କିଏ ଛିଣ୍ଡେଇ ଆଣି ଫିଙ୍ଗି ଦେଇ ଯାଇଚି ।

ମନେ ପଡ଼ିଲା ଓ ସେ ଅସହାୟ ହୋଇଗଲା । ଏମିତି ବେଳେବେଳେ ତାଙ୍କୁ ଖୁବ୍ ଏକା ଏକା ମନେହୁଏ ଓ ଗୋଟେ ଅସ୍ଥିରତା ତା'ର ଛାତି ଭିତରେ ଉତୁରି ପଡ଼େ । ତା'ର ସବୁ ସମ୍ଭାଷା ଯେମିତି ହୋଇଯାଇଚି ଜାଜ୍ ସଙ୍ଗୀତ । ଗୋଟେ ବିପର୍ଯ୍ୟସ୍ତ ଛନ୍ଦରେ ତାକୁ ଉତ୍ତେଜିତ କରିବ । ଠିକ୍ ଏମିତି ସମୟରେ ଭାବିବାକୁ ଆରମ୍ଭ କରିବ ଏଆଡ଼ୁ ସେଆଡ଼ୁ । ବିଚ୍ଛିନ୍ନ ହେଲେ ତା'ର କଲେଜ ଜୀବନର ସାଙ୍ଗ-ମାନଙ୍କ କଥା । ସେମାନଙ୍କ କଥା ମନେପଡ଼ିଲେ, ସେମାନଙ୍କୁ ଦେଖିଲେ ସଞ୍ଚିତାର ହିଂସା ହୁଏ । ସେମାନଙ୍କର ସବୁ ସୁଖ ପୌଷମାସର ଖରାରେ ଦିଆଯାଇଥିବା ରେଜେଇ ଓ ଗଦର ଭଳି । ମନେ ପଡ଼ିଲେ, ପୁଣି ଓଲଟି ପଛକୁ ଅନେଇ ତା'ର ନିଜ ଜୀବନକୁ ଦେଖିବ ସଞ୍ଚିତା । ସୋରିଷ ଫୁଲଭଳି ଅତୀତର ଗନ୍ଧ । ସେ ବ୍ୟସ୍ତ ହେବ, ବ୍ୟାକୁଳ ହେବ । ସେ ଭୁଲିଯିବ ଚୁଲି ଉପରର କଡ଼ାଇରେ ଥିବା ତରକାରି କଥା । ଅନ୍ୟମନସ୍କ ଭାବରେ ସୁଖ, ଦୁଃଖ ଛିଣ୍ଡେଇ ନେଉନେଉ ଅତୀତର ପିଠିରୁ—ହଠାତ୍ ସ୍ମୃତିମାନଙ୍କୁ ଫେରି ଆସି ଦୀର୍ଘଶ୍ୱାସଟେ ଛାଡ଼ିବ । ବଞ୍ଚି ରହିବା ବଡ଼ କଷ୍ଟ ହୋ ।

ଦିନେ ଭାବିଥିଲା, ଷୋଳ ସତର ବର୍ଷ ବୟସରେ, ଜୀବନଟେ । ଶିଉଳିଟା ମୁଦି ଭଳି ଚମତ୍କାର ଅଭିଜ୍ଞତାଟେ । ଆଜି, ଚବିଶ ବର୍ଷ ବୟସରେ ସେ କ୍ଲାନ୍ତ । ଜାଣେ, ଜୀବନର କୌଣସି ମାନେ ନାହିଁ । ଗୋଟେ ବିବର୍ଣ୍ଣ ପରଟସା ପ୍ରଜାପତି ଭଳି ଅସୁନ୍ଦର ।

ସଞ୍ଚିତା ଉଠି ଠିଆହେଲା । ଆର ଘରେ କିଏ କଥା ହେଉଛି କି ? କିଏ ସେ ? ବାପା ଆସିଗଲେ କି ? ବାପାଙ୍କ କଥା ମନେ ପଡ଼ିଲେ ଓ ସେ ଘୃଣାରେ ଘଟରେ ନାକ ଫୁଲେଇ ଦେଲା । କେହି ଜାଣନ୍ତି ନାହିଁ ଈଶ୍ୱର ଓ ସଞ୍ଚିତା ଛଡ଼ା

ଯେ, ତାଙ୍କ ବାପା ଏଇ ପଚାଶ ବର୍ଷ ବୟସରେ ବି ଅଶ୍ଳୀଳ ଚଟି ବହିସବୁ ଲୁଚେଇ ଲୁଚେଇ ପଢ଼ନ୍ତି ଓ ଗୁଣ୍ଡି ରଖିଥା'ନ୍ତି ଜଭୁତ ଚାଳ ସନ୍ଧରେ । ସଞ୍ଚୟିତାର ସେହି ଦିନଠୁ ସବୁ ବିଶ୍ୱାସ ସମସ୍ତଙ୍କ ଉପରୁ ହଜିଯାଇଛି । ସେଦିନ ବାପାଙ୍କୁ ଦେଖିଥିଲା ନଗ୍ନ ନାରୀମୂର୍ତ୍ତିର ଚିତ୍ର ସାମ୍ନାରେ ଲୋଭିଲା ଆଖିରେ ।

ସେ ଜଣେ, ଏମିତି ଲୋକର ବାପା ହେବାର ଯୋଗ୍ୟତା ହିଁ ନାହିଁ । ସେ କେବେ ସଞ୍ଚୟିତାର ବାହାଘର କଥା ଭାବିବେନି । ଗାଁରେ ଚାଷ କରୁଥିବା ବଡ଼ପୁଅର ଚାକିରି କଥା ଭାବିବେ ନି କି ଦୁଇପଇସା ବେଶୀ ରୋଜଗାର କରି ସୁଖରେ ଚଳିବା କଥା ଚିନ୍ତା କରିବେ ନି । ନିଜର ମନମର୍ଜିରେ ସେ ଘୂରିବୁଲିବେ ଓ ଘରକୁ ଆସି ଖାଇବାକୁ ନ ପାଇଲେ ହାଣ୍ଡି ଭାଙ୍ଗିବେ । ଏମିତି ବାପକୁ ଶ୍ରଦ୍ଧା ଭକ୍ତି କରିହୁଏ ?

ସେ ଏରୁଣ୍ଡି ବନ୍ଧ ପାଖରେ ଯାଇ ଉହୁଙ୍କି ଦେଖିଲା । ନା, ବାପା ଆସି ନାହାନ୍ତି । ଆସିଥିଲେ ସାଇକେଲଟା ବାହାରେ ଥା'ନ୍ତା । ତେବେ କ'ଣ ମୃଣ୍ମୟ ? ମୃଣ୍ମୟ ତା'ର ମାମୁଁ, ଅଥଚ ଛ'ବର୍ଷରେ ଛୋଟ । ସେ ସଞ୍ଚୟିତାକୁ ଡାକେ ମାଉସୀ । ଅତି ଛୋଟ ପିଲାଟା ।

ସଞ୍ଚୟିତା ପୁଣି ଫେରିଆସିଲା ଚୁଲିଶାଳକୁ । ମୃଣ୍ମୟ ହିଁ ହୋଇଥିବ ବୋଧେ । ମୃଣ୍ମୟ ତ ଆସେ ଖାଲି ନବନୀତା ପାଖକୁ । କେବେକେବେ ଦେଖା କରିଯାଏ ଖାଲି ସଞ୍ଚୟିତାକୁ । ଆଚ୍ଛା, ମୃଣ୍ମୟ ଓ ସଞ୍ଚୟିତାର କୌଣସି ସମ୍ପର୍କ ଅଛି କି ? ସେମିତି ସେମିତି ?

ସଞ୍ଚୟିତା ବସି ପଡ଼ିଲା ଚୁଲି ପାଖରେ ଓ ମନକୁ ମନ କହିଲା ମୋର ଆଉ କାହାରି ଉପରେ ବିଶ୍ୱାସ ନାହିଁ । କାହାରି ଉପରେ ନାହିଁ ।

କିଛିକ୍ଷଣ ପରେ ଦୀର୍ଘଶ୍ୱାସ ପକେଇ ପୁଣି କହିଲା: ମୋର ମନଟା କି ଛୋଟ । ମୃଣ୍ମୟ ପରା ମାମୁଁ । ରକ୍ତର ସମ୍ପର୍କ । ଛି ଛି ।

ମୃଣ୍ମୟ ପାଖରେ ନବନୀତା ଗୋଟେ ଅନୁଭୂତି । ଏମିତି ଏକ ଏକ ଅନୁଭୂତି, ପ୍ରେମ ଶବ୍ଦରେ ଯାହାକୁ ଠିକ୍ ବୁଝେଇ ହୁଏନା, ଭଲପାଇବା କହିଲେ ଯାହାର ଦାମ କମିଯାଏ । ଅସଲରେ ନବନୀତାକୁ ନେଇ ତା'ର ଅନୁଭୂତି ଏତେ ମିଠା ଯେ—ଠିକ୍ ଯେମିତି ମାଧୁର୍ଯ୍ୟ ଥାଏ ଫୁଲର ଭିତରେ, ତାରାର ଲୁହରେ, ମୁକ୍ତାରେ । ମୃଣ୍ମୟର ଗମ୍ଭୀରିଆ ଆଖିରେ ଖୋଜୁଛି ନବନୀତା ସବୁ ସମୟରେ । ତା'ର ମୁହଁ ଆଲୁଅ ହେଲେ ମୃଣ୍ମୟର ସକାଳ ସକାଳ ହୁଏ । ନବନୀତାର ଦୁଃଖରେ ତା'ର ରାତି ।

ଏଇ ଯେ ନବନୀତା ଥିଲା ସୁନ୍ଦର ଯୋଡ଼ହୋଇ ବସିଛି ଏଇ ଭଙ୍ଗାଘରେ, ଉପରେ ଅସ୍ପଷ୍ଟ ଆଲୁଅରେ ବି ଉଆସ କରୁଛି ସ୍ୱର୍ଗଟେ, ସ୍ୱଳରୁ ଛୁଣ୍ଡା ପଣତ କାନିରୁ ଦେଖାଯାଉନା କିଛି ବିଧବା ଜନ୍ମ—ମୃତ୍ୟୁଞ୍ଜୟର ମନେ ହେଲା ପୃଥିବୀର ସବୁ ସୁଖ ଏଠି ଅଛି, ଏଠି—ଏଇଠି ।

ସେ ଭୁଲିଗଲେ ଯେ ପାଖରେ ପରମିତା ଶୋଇଛି, ଯେ କୌଣସି ମୁହୂର୍ତ୍ତରେ ଆଖି ମେଲି ଦେଇପାରେ । ଭୁଲିଗଲେ ଯେ କବାଟଟା ଦରଆଉଜା ଅଛି ଓ ଆରଘରେ କାଉଁରୀ ଥାଳ ଠୁଂ ଠାଂ କରୁଥିବା ସୁଅସ୍ମିତା ଯେ କୌଣସି ମୁହୂର୍ତ୍ତରେ ପଶି ଅସିପାରେ, ନ ହେଲେ ଭାଇ ଅର୍ଥ ତ ନବନୀତାର ବାପା ବି ପହଞ୍ଚି ଯାଇ ପାରନ୍ତି । ଠିକ୍ ଏଇ ମୁହୂର୍ତ୍ତରେ ନବନୀତାକୁ ଚୁମାଦେବାର ଲୋଭ ସମ୍ଭାଳି ପାରିଲେ ନି ଓ ବସନ୍ତର ପ୍ରଥମ ପ୍ରଥମ ବର୍ଷା ବିନ୍ଦୁ ଭଳି ସୁଅରେ ଟଳମଳ ହୋଇ ଝଙ୍କି ପଡ଼ିଲା ବେଳେ ଚମକି ଉଠିଲା କି ନବନୀତା ? ପୁଛିଲେ ଓ କହିଲା ମାମୁଁ ଆଜି ମନଟା ଭଲନାହିଁ ମାମୁଁ । ସବୁବେଳେ ମନେ ହେଉଛି—ଏଇଟା ପାପ । ମୁଁ କ'ଣ କରିବ ମାମୁଁ ?

ଏମିତି କଥା ସବୁ ନବନୀତା ପ୍ରାୟ କୁହେ ଓ ପ୍ରତିଥର ମୃତ୍ୟୁଞ୍ଜୟର ଏସବୁ ଶୁଣିଲେ ମନ ଖରାପ ହୋଇଯାଏ । ଏଥର ବି ମନ ଖରାପ ହୋଇଗଲା ମେଘୁଆ ଆକାଶ ଭଳି । ନବନୀତାର କଥାଗୁଡ଼ାକରେ ଗ୍ଲାନି ତଳେ ବହନ୍ତି ଅନ୍ଧାର । ତା' ଜୀବନର ସବୁ ବ୍ୟର୍ଥତାର ଲତାଗୁଡ଼ାକ କ୍ରମଶଃ ବଢ଼ି ଉଠିଲା ଭଳି ଶକ୍ତ ଓ ମଜବୁତ ।

ନବନୀତା ବୋଧେ ଅନୁମାନ କରିପାରିଲା । କବାଟ ଆଡ଼କୁ ଅନେଇଲା ଡରିଲା ଆଖିରେ, ତାପରେ ଖୁବ୍ ସଂକ୍ଷିପ୍ତ ସମୟ ପାଇଁ ମୃତ୍ୟୁଞ୍ଜୟର କୋଳରେ ମୁଣ୍ଡ ଥୋଇ କହିଲା: ମୁଁ ତୁମକୁ ବହୁତ ଦୁଃଖ ଦେଉଛି । ନୁହଁ ? ମାମୁଁ ?

ମୃତ୍ୟୁଞ୍ଜୟର ସବୁ ଛୁଣ୍ଡା ଜାଗାରେ ଯେମିତି ସିଲେଇ କରିଦେଲା ନବନୀତାର କଥା ପଦକ । ଖୁବ୍ ଆଦରରେ ତା' ମୁଣ୍ଡରେ ହାତ ବୁଲେଇ ଅଣି ଅନୁଭବ କରିପାରିଲା ବେଳେ ଲବଙ୍ଗ ଦ୍ୱୀପର ବାସ୍ନା, ନବନୀତା ଉଠେଇନେଲା ମୁଣ୍ଡ ଓ କହିଲା: ତମେ କିଆଁ ମୋ ରକ୍ତର ସମ୍ପର୍କ ହେଲ ମାମୁଁ ? କିଆଁ ଆଉ କେହି ହେଲ ନି ?

ମୃତ୍ୟୁଞ୍ଜୟର ସବୁ ରାଗ ସମାଜ ଓ ଈଶ୍ୱର ପ୍ରତି । ଏଇ ମୁହୂର୍ତ୍ତରେ ପାଇଲେ ଈଶ୍ୱରଙ୍କୁ ମଇଳା କାଗଜ ଭଳି ଛିଣ୍ଡାଇ ଟୁକୁରା ଟୁକୁରା କରିଦେବ ଯେମିତି । କହିଲା: ମୁଁ ତୋର ମା'ର ବଡ଼ବାପା ପୁଅ ଭାଇ ତ, ଦେଖ ଦକ୍ଷିଣରେ ମାମୁଁ ଭାଣିଜାର ବାହାଘର ହୁଏ ।

ନବନୀତ ର ସେଇ ହଁ ନାଁରେ ଦ୍ୱନ୍ଦ୍ୱ । ମୃଣ୍ମୟ ସବୁବେଳେ ତା' ଆଡ଼କୁ ଏମିତି ହାତ ବଢ଼େଇ ଦେଉଥିବ ସବୁଜ ସ୍ୱପ୍ନର ଉପତ୍ୟକାକୁ ନେଇଯିବା ପାଇଁ ଓ ଆଗ୍ରହରେ ହାତ ବଢ଼ାଇ ବଢ଼ାଇ ନବନୀତା କୁଣ୍ଠରେ କହିବ, ମୋର ଖୁବ୍ ଭୟ ହୁଏ ମାମୁଁ ।

ଏଥର ବି ସେମିତି । କହିଲା : କିନ୍ତୁ ସେ ସମାଜରେ ଚଳୁଥିଲେ ଚଳୁଥିବ । ଆମ ସମାଜରେ ତ ଚଳେ ନା ।

ମୃଣ୍ମୟର ସ୍ୱରଆଡ଼ ଗୋଟେ ଆକୋଣ ପାଖରେ ଘୁଙ୍ଗୁର ବାନ୍ଧି ଘୁରୁବୁଲୁଛି । ସେ ଶବ୍ଦରେ ଭାଙ୍ଗି ପଡ଼ୁଛି ନର୍ତ୍ତକୀ । ଭାଙ୍ଗି ଯାଉଛି ଦର୍ପଣ । ହାତଠାର ଡାକ ଦେଉଛି କେଉଁ ଏକ ବିଦ୍ରୋହୀ ସନ୍ୟାସୀ । କହିଲା : ମୁଁ ସମାଜ ଫମାଜ ମାନେନା, ନବନୀତା ତମକୁ ଚାହେଁ । ତମକୁ କହୁନି ନୀରୁ, ଆମ ସମ୍ପର୍କ କଥା କହେଇ ମୁଁ ବୋଉଙ୍କ ପାଖକୁ ଚିଠି ଦେଇ ସାରିଛି—ସପ୍ତାହକ ଆଗରୁ ।

ମୃଣ୍ମୟ ବସିଥିଲା ତକ୍ତପୋଷ ଉପରେ ଗୋଟେ ପାଦ ତୋଳି, ପାଖରେ ଶୋଇଥିଲା ସରସ୍ୱତୀ, ତା'ର ପିଠି ତଳରେ ଇଂରାଜୀ ବହି ଚାପି ହୋଇଯାଇଛି । ମୃଣ୍ମୟର୍ ସ୍ୱଚ୍ଛନ୍ଦ ତଳ୍ପାର, ସଇଲାକୁ ଭ୍ରୂକ୍ଷେପ ନ କରି ନବନୀତା ନିଜର ଓଠକୁ ରକ୍ତିମ କଲା ଲଜ୍ଜିତ—ଚାପି ଧରିଲା ଓ ଗୁଣ୍ଡାଇଲା ପାଦକୁ । ସେମିତି ଭାବରେ କହିଲା ମୁଁ କେତେ ମେଣ୍ଟାଲ ସଫର୍ କରୁଛି ମାମୁଁ । ସଞ୍ଜୁପା ଏବେଠୁ ସସ୍‌ପେକ୍ଟ କରୁଛି । ଆଇ ଜାଣି ସାରିଲେଣି । ସେ ଯଦି ବାପା ବୋଉଙ୍କୁ କହିଦିଅନ୍ତି ? କହି ଦେବେ ତ ନିଶ୍ଚେ । ଭବିଷ୍ୟତ କଥା ଭାବିଲେ ମୁଁ ଥରିଉଠୁଛି । କ'ଣ ହେବ ଆମର ଭବିଷ୍ୟତ ? ମାମୁଁ କ'ଣ ଅଛି ଭାଗ୍ୟରେ ? ଦୁନିଆଟାଯାକ ମୋତେ ନିନ୍ଦିବେ । କହିବେ ମୁଁ ଖରାପ ହୋଇଯାଇଛି । ଖୁବ୍ ନାକେ ଟିଅ ମୁଁ ।

କେଉଁଠି ହେଲେବି ତ ବାଜୁନି ସିତାର କମ୍ପା ଏସ୍‌ରାଜ । ଅଥଚ ଦୁଃଖର ରାଗିଣୀଟେ ବାରମ୍ବାର କାହିଁକି ମନେ ପକେଇ ଦେଉଛି—ଝଡ଼ ଭଳି ବାଜିଉଠି, ହେମନ୍ତରେ ସନ୍ଧ୍ୟାର ଚଢ଼ୁଚି କଥା ? ମୃଣ୍ମୟ କହିଲା ନୀରୁ, ମୁଁ ତମକୁ ବହୁତ ଦୁଃଖ ଦିଏ, ନୁହେଁ ?

ନବନୀତା ମୁହଁ ଉଠେଇ ଅନେଇଲା ମୃଣ୍ମୟ ଆଡ଼କୁ । ଅଭିମାନଭରା ମୃଣ୍ମୟର ଆଖିରେ ଆଖିରେ ଅଜସ୍ର ଅନୁରାଗରେ ରଙ୍ଗ ଦେଇ ନିଜକୁ ସମ୍ଭାଳି ପାରେନି ନବନୀତା କେବେ । ପାରିଲାନି ଏଥର ବି ଓ ଆଗେଇ ଆସି—ମୃଣ୍ମୟର ଓଠ ଭିତରେ ଲୁଚିଯିବା ପୂର୍ବରୁ କହିଲା : ଯାହାତ ହୋଇଯାଇଛି—ଯାଇଛି । ଏବେ କହିବାର କ'ଣ ଅଛି ଆଉ ? ମାମୁଁ, ତମେ ମୋତେ ବିବାହ କରିବନି ତ ?

ମୃଣ୍ମୟୀ ପୁଣି ଥରେ ହଜିଗଲେ ସୁନ୍ଦର ସାମ୍ରାଜ୍ୟରେ । ଶୀତ ଶେଷର ସେଇ କଅଁଳ ପଡ଼ିଆ ଶିଶିରର ପ୍ରସାଧନରେ ନବନୀତାର ସମଗ୍ର ଅସ୍ତିତ୍ୱ ହୋଇଯାଇଛି ଯେମିତି । ସେଇ ସକାଳର ସ୍ୱପ୍ନ ଭିତରେ ସେ ଓଦାମାଟିର ଗୀତ ଶୁଣିବାକୁ ଚାହେଁ । ମୃଣ୍ମୟୀ ଜିଭ ଭର୍ତ୍ତି କରିଦେଲା ନବନୀତାର ମୁହଁ ଭିତରକୁ ଓ ତାର ଜିଭ ଚୁଇଁ ଟାଣିନେଲା ସମସ୍ତ ଅମୃତ—ଯେମିତି ଏଇ ମୁହୂର୍ତ୍ତରେ ହିଁ ତା'ର ଅମରତ୍ୱ ଲୋଡ଼ା ହିଁ ଲୋଡ଼ା । ନବନୀତା ସେଇ ମୁହୂର୍ତ୍ତରେ ପ୍ରଚଣ୍ଡ ଉତ୍ତେଜନାରେ ଥର ଥର ହୋଇ ନୌକାରେ ଦେଲା ପ୍ରଥମ ପାଦ—ଯେଉଁ ନୌକା ତାକୁ ନେଇଯିବ ସବୁଜ ସ୍ୱନର ଉପତ୍ୟକାକୁ ଓ ମୃଣ୍ମୟୀର ମୁହଁ ସାମାରେ ମହମବତୀ ଭଳି ତରଳି ଯାଉ ଯାଉ ଅନୁଭବ କଲା ଶୀତଦିନିଆ ଦ୍ୱିପ୍ରହରର ଖରାର ମସିଣା ଭଳି ଏକ ସୁଖର ରାଜତ୍ୱ ଭିତରେ । ଅନୁଭବ କରୁ କରୁ ଶୁଣିପାରିଲା, ତା' ଓଠରୁ ଓଠ ଅଲଗା କରି ମୃଣ୍ମୟୀ କହୁଛି : ତମର ପ୍ରତୀକ୍ଷା କରୁକରୁ ମୋର ଦି'ଟା ଆଖି ପଥର ହୋଇଗଲାଣି ନୀତା ।

ଅଥଚ ଆଉ କିଛି କହିବା ପୂର୍ବରୁ ବାପା ଆସୁଚନ୍ତି କହି ଘୁଞ୍ଚିଗଲା ନବନୀତା ଓ କିଛି ଶବ୍ଦ ଶୁଣି ନ ପାରି କିଂକର୍ତ୍ତବ୍ୟବିମୂଢ଼ ଭଳି ବସି ରହିଲା ମୃଣ୍ମୟୀ । ଅଳ୍ପ ସମୟ ପରେ କବାଟ ଠେଲି ପଶିଲେ ସିଏ, ଉତ୍ତର ପଞ୍ଚାଶର ପ୍ରବୀଣ—ସିଏ ହିଁ ନବନୀତାର ବାପା, ମୃଣ୍ମୟୀର ଭଉଣୀ । ନବନୀତାର କାନ ଏତେ ପତଳା କେଜାଣି କେମିତି ଧରିପାରେ ସେ ? ମୃଣ୍ମୟୀ ପାରେନା, ଭାବି ଆଶ୍ଚର୍ଯ୍ୟ ହୁଏ ।

ନବନୀତା କେମିତି ସହଜ ଭାବରେ ପଚାରିଲା : ତମେ କହୁଚ ଫାରାଡ଼େଜ୍ ଲ' ଅଫ୍ ଇଲେକ୍ଟ୍ରିସିଟିଟା ପରୀକ୍ଷାରେ ଆସିବ ?

ମୃଣ୍ମୟୀ ନଲିପ୍ତ ଭାବରେ କହିଲା : ସିଓର୍ । ତମର ବୋର୍ ଲାଗୁନି ହେଇଚ ?

ସେ ପ୍ରବୀଣଟି, ଅବିନାଶ ଯାଙ୍କର ନାଁ, ନଜର ବି ଦେଲେନି ମୃଣ୍ମୟୀ ଓ ନବନୀତା ଆଡ଼କୁ । କାନ୍ଥରେ ସାଇକେଲକୁ ଆଉଜେଇ ଦେଇ ସେ ଟେବୁଲ ପାଖକୁ ଆଗେଇଗଲେ ଓ ଟେବୁଲର ସବୁ ବହିତକ ଗୋଟେ ଧକ୍କାରେ ଟସେଇ ପକେଇ, ବାହାରିଗଲେ ଏତେ ଶାନ୍ତ ପରିବେଶକୁ ଉତ୍ତେଜନାରେ ଥରଥରେଇ ଦେଇ । ଗଲାବେଳେ କବାଟଟିକୁ ଖୁବ୍ ଜୋର୍‌ରେ ବନ୍ଦ କରି ନ ଥିଲେ ବି ।

ନବନୀତାର ମୁହଁ ମେଘୁଆ ଆକାଶ । ଶ୍ରାବଣର କଳା ମେଘ ତା'ର ଲୁହ ଟଳମଳ ଆଖିରେ । କହିଲା : ବାପା ବି ସନ୍ଦେହ୍‌ପେକ୍ଟ କରୁଛନ୍ତି । ମୋର କ'ଣ ହେବ ମାମୁଁ ? ମୁଁ ବିଷ ଖାଇଦେବି ।

ମୁଣ୍ଡ ଘୃଷ୍ଟି ଗୃପି ଧରିଲା ନବନୀତାର ହାତକୁ । ତା'ର ଅଛ ଅନେକ ପ୍ରତିଶ୍ରୁତି । ସେ ହାତରେ ରହିଛି ଗାଙ୍ଗ'ବାର ମାସ । ସେ ନବନୀତାକୁ ନେଇଯିବ ସବୁଜସ୍ତନର ଉପତ୍ୟକାକୁ, ପାଦରେ ମାଡ଼ି ଦଳି ଚକଟି ସମାଜକୁ ସିଗାରେଟ୍ ଟୁକୁରା ଭଳି ।

ଆଉ ଘରୁ ସମ୍ପର୍କ ଛିଡ଼ା ପଡ଼ିଗଲା କଏ ସେ ? ବାହାରେ, କଏ ପଡ଼ିଗଲା ଗାଁ କ'ଣ ତ ?

ଓଲଟ କାଚଟିରେ ପୋଛିଦେଲା ଆଖି ନବନୀତା । ଜୀବନଟା ଏମିତି ବିଚିତ୍ର । ବିଚିତ୍ର ହିଁ ତ ସବୁ ଅଭିଜ୍ଞତା ।

ଏଇ ଯେ ସେ ବାହାର ଆସିଲେ ଘରୁ ଓ ଏମିତି ନିର୍ଲିପ୍ତ ଖାମଖେୟାଲି ଭାବରେ ଚାଲୁଛନ୍ତି ରାସ୍ତାରେ ଯେ ଯେମିତି କୌଣସି ନା କୌଣସି ବସ୍ ଚାଲୁନି । ଗାଡ଼ିର ଟିଂଟାଂ ଶବ୍ଦ ନାହିଁ, ପିଲାମାନଙ୍କର ହୋହାଲ୍ଲା ଖେଳ ନାହିଁ । ସବୁ ରେଡ଼ିଓ ବନ୍ଦ ହୋଇଯାଇଛି । ସେ ଏଇଭଳି ନୀରବତା ଭିତରେ ଚାଲି ଚାଲି ଯାଉଛନ୍ତି ଉତ୍ତର ମେରୁରୁ ଦକ୍ଷିଣ ମେରୁକୁ, ପୁଣି ଦକ୍ଷିଣ ମେରୁରୁ ଉତ୍ତର ମେରୁକୁ, ବିଷୁବ ରେଖାର ଠିକଣା ଖୋଜି ଖୋଜି ।

ଜୀଅଁର ଝଲକ ଭଳି ଉଜ୍ଜ୍ୱଳ ପକ୍ଷୀର ପର ଭଳି କଅଁଳ ଫୁଲର ପାଖୁଡ଼ା ଭଳି ସ୍ନିଗ୍ଧ । ଚାଲୁ ଚାଲୁ କେଉଁ ଏକ ପରିଚ୍ଛନ୍ନ ସକାଳର ଶ୍ମଶାନ ଘାଟରେ । ଏବେ ଆଖିର ପାଓ୍ୱାର କମ୍ । ଚଷମା ତଳରୁ ବି ଜଗତଟା ଲଚ ଲଚ ଯାଏ । ସେ ଚଷମା ଖୋଲି ରୁମାଲରେ ପୋଛି ନଅନ୍ତି । ଏତେ ସୁନ୍ଦର ସୁନ୍ଦର ଦୃଶ୍ୟ ସବୁ କେଉଁଠି ହଜିଗଲା ତ । ପୁଣି ଚଷମା ପିନ୍ଧି ଗୃହଆଡ଼କୁ ଦେଖନ୍ତି । ଗୃହଆଡ଼େ ଜହ୍ନ ଉଠି । ସଫେଦ ବାଧବା କୁହୁଡ଼ି । ଝାପ୍‌ସା ଝାପ୍‌ସା, ତାଙ୍କର ଲଥା ବାହି ବାହି ଟଙ୍କଣି ବଜେଇ ପୃଥିବୀ ଯାଉଛି ଚାଲି ରାମନାମ ସତ୍ୟ ହୈ ଗୀତ ଗାଇ ଗାଇ । ସେ ଏମିତି ଚାଲି ଚାଲୁ ଥକା ହୋଇ ଠିଆହୋଇପଡ଼ନ୍ତି ମଝିରାସ୍ତାରେ, ବେଳେବେଳେ । ତାଙ୍କର ନଦୀରେ ଆଉ ସ୍ରୋତ ନାହିଁ, ନାଆରେ ନଇଁ ନଶା । କ୍ଲାନ୍ତ ରେଟିନାରେ ଝାପ୍‌ସା ଝାପ୍‌ସା, ଉଦାସ୍ୟାସ୍ତ ଏକା ।

ସେ ଗୋଟେ ଦୀର୍ଘଶ୍ୱାସ ଛାଡ଼ନ୍ତି ଓ ପୁଣି ଚାଲିବାକୁ ଆରମ୍ଭ କରନ୍ତି । ତାଙ୍କର କଥାମାନେ ନୀରବତା । ଭିଡ଼ ଭିତରେ ବୁଲୁଥିଲେ ଏଆଡ଼େ ସେଆଡ଼େ । କେତେ ଦୃଶ୍ୟ ଆସେ, ଯାଏ, ସେ ଲକ୍ଷ୍ୟ ହିଁ କରନ୍ତି ନାହିଁ । ଭିଡ଼ ଭିତରେ ସେତେବେଳେ ଗଭୀର ପ୍ରତିଧ୍ୱନି ଭିତରେ ଧାଇଁ ବୁଲୁଥାଏ ତାଙ୍କ ନୀରବତା, ଭାଷାବିହୀନ ସଂଳାପରେ ଲୁହଭରା ବେଦନା ଶବ୍ଦହୀନ ବକ୍ତବ୍ୟରେ ଜଳିପୋଡ଼ି ମରୁଥାଏ ଭିଡ଼ ତଳର ଢେଲା ଚିବ । ସେ ଢେଲାଚିବଟି ତାଙ୍କର ନଜର । ଏମିତି ଚାଲୁଚାଲୁ ସେ ନିଜ ଅଜାଣତରେ

ଘଣ୍ଟା ଦୋକାନରେ ପଶିଯା'ନ୍ତି, ଯେଉଁଠି ଅନେକଗୁଡ଼ିଏ ସମୟ ହଠାତ୍ ଚୁପ୍ ହୋଇ ଠିଆହୋଇ ଯାଇଛନ୍ତି ।

ପୁଣି ଫେରି ଅସନ୍ତି ନିରମ୍ଭାର ରାସ୍ତା ଉପରକୁ ଓ ଘୂରିବୁଲନ୍ତି ସେ ଅବିନାଶ—ସଙ୍ଗୀତା ପଣ୍ଡିତଙ୍କର ବାପା, ଯେମିତି ଘୂରିବୁଲୁଛନ୍ତି ଏଇ ଡିସେମ୍ବରର ଶୀତୁଆ ସନ୍ତର ଜଙ୍ଗଲରେ ଭିଜାଭିଜା । ତାଙ୍କ ଗ୍ରୀବା ଭିତରେ ଗୋଟିଏ ବୈରାଗୀ ସନ୍ନ୍ୟାସୀ ସବୁବେଳେ ହାତ ଠାରି ଡାକୁଛି ଓ ସେ ଅଥୟ ହୋଇପଡ଼ୁଛନ୍ତି । ଘରେ ତାଙ୍କର ସ୍ତ୍ରୀ—ବେକାର ନାତିପୁଅ ସେ ଜାଣନ୍ତି, ଦୁଃଖରେ ସମସ୍ତ ବିତୁଛି ସେମାନଙ୍କର । ବଡ଼ ଝିଅଟିର ଦାମ୍ପତ୍ୟର ସମସ୍ୟା ବଢ଼ିଯାଉଛି । ମଝିଆଟା ନିଜ ମାମୁଁଙ୍କ ସଙ୍ଗରେ ଲଟର ପଟର ହେଉଛି । ସେ ସବୁ ଜାଣନ୍ତି । କିନ୍ତୁ ଦେଖି ସୁଦ୍ଧା ନ ଦେଖିଲା ଭଳି ନିସ୍ପୃହ ଭାବରେ ରହିଯା'ନ୍ତି—ତାଙ୍କୁ କିଛି ଭଲ ଲାଗେନା । ନା, ମୋର ସ୍ତ୍ରୀର ସେବା, ନା—ଏଡିକାର ଦୁଇ ସୁନ୍ଦରୀ ଝିଅଙ୍କର ଅଳି, ନା ଗୃହକର୍ମ ନା ଜୀବନ । ତାଙ୍କୁ କିଛି ଭଲ ଲାଗେନା । ସେ ନିର୍ବିକାର ଭାବରେ ଘୂରି ବୁଲନ୍ତି ନୀରବତା ଭିତରେ । ବୁଲି ବୁଲି ଅନେକ ଦୂରକୁ ଚାଲିଯା'ନ୍ତି—ଗଛ ବୃକ୍ଷ ଡେଇଁ, ନଦୀର କନାର ଡେଇଁ, ମଣିଷ ଓ ଭିଡ଼ ଡେଇଁ । ଗୋଟିଏ ବନ୍ଦ ଦୋକାନର ବାରଣ୍ଡାରେ ପଡ଼ିଥିବା ବେଞ୍ଚ ଉପରେ ବୋଇ ବୋଇ ସେ ଚାଲିଯା'ନ୍ତି ନୀରବତାର ରାଜ୍ୟକୁ । ସେଠି ନୀରବତା କି ମଧୁର । କୌଣସି ଦେଖା ନାହିଁ, ଭାଷା ନାହିଁ, ବକ୍ତବ୍ୟ ନାହିଁ; ସଂଳାପ ନାହିଁ, [illegible] ଦୁଃଖ ନାହିଁ, ସୁଖ ନାହିଁ । ସେ ଚୁପଚୁପ ଭାସିବୁଲନ୍ତି ନୀରବତା ଭିତରେ ।

ଜୀବନରୁ ସେ ଆଉ କିଛି ଚାହାନ୍ତି ନାହିଁ । ଯେମିତି ଜୀବନରୁ ଅଲଗା ହୋଇଯାଇଛନ୍ତି । ତାଙ୍କର ଆଉ ନାହିଁ କୌଣସି ଅନୁଭୂତିବୋଧ । ସେ ସୁଖ ଦୁଃଖ, ଆଶା ଆକାଂକ୍ଷା, ପ୍ରାପ୍ତି ଓ ବ୍ୟର୍ଥତାର ଖଣ୍ଡିଆ ଫୁଲ ଗୋଟେଇ ବୁଲନ୍ତି ପ୍ରତିଟି ସକାଳରେ । ସେ ଘୂରିବୁଲନ୍ତି ଏମିତି ଏମିତି । ସେ ଶୋଇରହନ୍ତି ଏମିତି ଏମିତି । ସେ ଶୋଇ ଶୋଇ ନୀରବତା ଅନୁଭବ କରି ଭାସିଯାନ୍ତି ଏମିତି ଏମିତି । ବେଳେବେଳେ ଫିସ୍‌ଫିସ୍ କରି କହନ୍ତି ଅଇ ଆମ୍ ଏନ୍ ଅବସର୍ଭ ମେନ୍ ଦ ଷ୍ଟ୍ରେଞ୍ଜର ।

ସତେ ଛବିଶି ବର୍ଷର ଚନ୍ଦ୍ରନାଥ ବନ୍ଧୁରୁ ଓହ୍ଲାଇପଡ଼ି ଯୁବକ ହୋଇଗଲେ । ନସ୍ତାଷ୍ଟ୍ରଟା ପ୍ରାୟ ଫାଙ୍କା । ଟ୍ରେନ୍‌ଆଡ଼େ ଜହ୍ନ ରାତି କୁହୁଡ଼ିର ଧଳା ଶାଢ଼ୀ ପିନ୍ଧି ଥିରି ଥିରି କଥା କହୁଛି । ସେ ଷ୍ଟେସନ୍ ବାହାରକୁ ଆସିଲେ ଓ ରିକ୍ସା ଖୋଜିଲେ । ତାଙ୍କ ଅଗ ପାଖରେ ଝିଂ ଝାଂ ହୋଇ ଚିଙ୍କି କେତେଗୁଡ଼ିଏ ରିକ୍ସା ଚାଲିଗଲେ ଯୌବନର ଗୀତ ଗାଇ ଗାଇ । ଏଇ ସୁନ୍ଦର ରାତିରେ ସେ ଶୁଣିପାରିଲେ ସ୍ମୃତିର ପଞ୍ଜରେ ଥିବା କେତେ ଏକେଇଶି ବର୍ଷର ଯୁବକଟିର ଜୀବନରେ ଉଡ଼ି ବୁଲୁଥିବା

ନେଖ ଚାଲିଛି ତାଙ୍କ ଉଠିବାର ବେଳ । ଷ୍ଟିର ପେପରର ଶକ୍ତ ଗୁଡ଼ରେ ନେଇ, କବିତା ଭଳି କିଛି ଉଚ୍ଚାରଣ ସେ ଧରି ରଖିଥିଲେ—ଏଇ ସହରରେ ଆଜିକୁ ଷୋଳ ସତର ବର୍ଷ ତଳେ, ଭୁଲି ଯାଇଥିଲେ ତ ।

ସେ ଟାକ୍ସିରେ ବସିଲେ ଓ ସୃଷ୍ଟିଧରର ମେସ୍‌ର ଠିକଣା କହିଲେ । ଏଇ ଏଡ଼ିପେଟ ଗ୍ରୀଷ୍ମର ଗୁଡ଼ ଟଣ ଟଣ କନ୍‌ଷ୍ଟାବାଲୀ ଆମେଇଲେ ସ୍ୟାଣ୍ଡେଲ ମ ର ମାର୍ଚ୍ଚ ହୁଡ଼ିଲେ ହେ ଅନୁଭବ କଲେ ଅଣ୍ଟା । ସେ ଶିହରି ଉଠିଲେ ଓ ତାଙ୍କର ମନେପଡ଼ିଲେ ଏମିତି କେତେ ସନ୍ଧ୍ୟା ସେ ହୋଟେଲ୍‌ରୁ ଖାଇସାରି ତାଙ୍କର ମେସ୍‌କୁ ଫେରୁଥିଲେ ଅଣ୍ଟାରେ ଥରି ଥରି, ଷୋଳ ସତର ବର୍ଷ ତଳେ । ସେ ଖୁବ୍ ଜୋର୍‌ରେ ନିଶ୍ୱାସ ନେଲେ । ଗୁଡ଼ରେ ଭରିଗଲା ପବନ । ପବନରେ ସୁରୁଡ଼ର ଗନ୍ଧ । ସୁରୁଡ଼ରେ ଯୌବନର ଗନ୍ଧ । ଏଇ ସହରରେ ସେ ହଜେଇ ଦେଇଛନ୍ତି କୋଡ଼ିଏ ଏକୋଇଶି ବର୍ଷର ଚନ୍ଦ୍ରନାଥଙ୍କୁ । କେଉଁଠି ହଜିଗଲେ ତ । ଏବେ ଚନ୍ଦ୍ରନାଥ କେମିତି ଅଲଗା ଅଲଗା ଅଟନ୍ତି ସେ କଲେଜ ଗୋଇଂ ପିଲା ସାଙ୍ଗରେ ତ ସେମାନଙ୍କର ସମ୍ପର୍କ ହିଁ ନାହିଁ ।

ଅଜିର ଚନ୍ଦ୍ରନାଥଙ୍କର କ'ଣ ଅଛି ସୁଖ ନାହିଁ ? ସୁଖରେ ନାହିଁ, କେମିତି ଏକଥା କହିବେ ଯେ ? ଦୁଇପାଖରେ ଟ୍ରାଫିକ୍ ଓ ଟଙ୍କା ମଣି ର ମଝିରେ ଧୀର ପାଦରେ ଗୁଳିପିବା, କୌଣସି ଅଡ୍ଡାକୁ ନ ଅନେଇ ମୁହଁ ନ ଉଠେଇ, ବ୍ୟସ୍ତ ହାତଠାରେ ଖୁଲି ରହି, ଅଙ୍ଗନରେ ଧୂଳି, ବାଲି ଅନ୍ଧକାର, ଅରଣ୍ୟ ଜାତି ଏସବୁ ଏ ବୟସରେ ଟିକ୍ ସୁହାଏ ନାହିଁ । ପ୍ରିୟ ପୋଷାକ ଭିତରେ ଅଡ଼ୁଥି ଦେହ ଏବେ ମୁହଁ ପୋଡ଼ି ବଜେଇ ନିଏ । କେମିତି କହିବେ ଯେ ସୁଖରେ ନାହାନ୍ତି ? ତଥାପି, ଏଇ ସହରରେ ଓହ୍ଲେଇ ହଟାତ୍ ମନେହେଲା ତାଙ୍କର ଲୋମକୂପରେ ଭସିଯାଉଛି ଅସଂଖ୍ୟ ଟ୍ରେନ୍ ନେଇ ଚାଲି ଯାଉଥାନ୍ତି ସେ ବି ହୋଇଯାଇ ପୁରୁଣା ଭଳି ଠିଆ ହୋଇଛନ୍ତି ଏକା ଏକା, କେଉଁ ବୃଦ୍ଧ ବଟ ବୁଢ଼ା ଭଳି । ପାହାଥର ଦାନ୍ତ ସନ୍ଧିରେ ବନ୍ଧା ଯାଉଥିବା ପଥରଲା ଭଳି ହମେଶା ଯନ୍ତ୍ରଣା ବୋଧର ଦୁଃଖ ଜମା ହେଉଛି ଦେହ ଭିତରେ । ଗୁଡ଼ ଭିତରେ କେଉଁଠି କାନ୍ଦଣା ଝରିପଡ଼ୁଛି । ସେ ଯେମିତି ହଜେଇ ଦେଇଛନ୍ତି କେଉଁ ଏକ ଘଟଣାବହୁଳ ସକାଳ ଓ ତା'ପରର ସବୁ ସମ୍ଭାବନା । ଗୋଟେ ସୁନେଲା ବର୍ଷରେ ତାଙ୍କର ହୃଦୟ ଖାଁ ଖାଁ ହୋଇଉଠିଲା । ମନେହେଲା ଜୀବନଟା ଏମିତି ବ୍ୟର୍ଥ ହୋଇଗଲା । ପରୀକ୍ଷିତ ଲେଖିଛି ଟିକେଟ୍ ଭଳି ଯେ

ଟାକ୍ସିରୁ ଓହ୍ଲେଇଲେ ଚନ୍ଦ୍ରନାଥ, ଗୋଟେ ଘରର ଦୁଆର ପାଖରେ କବାଟକୁ ଜାବୁଡ଼ି ଧରି ଠିଆହୋଇଛି ପିଲାଟିଏ । ତା' ସାମ୍ନାରେ ରାସ୍ତା ଉପରେ ପିଲାଟିଏ ସାଇକେଲକୁ ଅଟକେଇ ଠିଆ ହୋଇଛି । ଏଇ ଦୃଶ୍ୟଟି ଦେଖୁ ଦେଖୁ ଅପସରିଗଲା ଓ ସେ ପୁଣି ଫେରି ଭିତରକୁ ଗଲେ । ଅଜିକୁ ଷୋଳ ସତର ବର୍ଷ ତଳେ ଏମିତି

ଅନେକ ସନ୍ଧ୍ୟା ସେ କଟାଇଥିଲେ ଯେ କଣ କଣ ଗୋଟେ ୪୦ର ବର୍ଷ ଝିଅ ସାଙ୍ଗରେ । ଯେବେ କଲେଜର କରିଡରରେ ଗୁଲୁଗୁଲୁ ଚନ୍ଦ୍ରନାଥ-ଅଙ୍କ ଠିଆହୋଇ ଯାଉଥିଲେ ଓ ତାକୁ ଦେଖିକି ବି ଝିଅଟା ମୁରୁକି ହସିଥିଲା । ଚନ୍ଦ୍ରନାଥଙ୍କର ସେତେବେଳେ ମନେହେଉଥିଲା, ସେ ପଦ୍ମବନର ସୁଗନ୍ଧ ଭିତରେ, ମନେହେଉଥିଲା: ସେଇ ସମୟଟା ତାଙ୍କର ସୁସମୟ ।

ଚନ୍ଦ୍ରନାଥ ଆଉଜି ବସିଲେ ଚକ୍‌ସାରେ । ଜୀବନଟା ଏମିତି ହିଁ । ଏ ସୁଗନ୍ଧ ଫୁଗନ୍ଧର କୌଣସି ମାନେ ହିଁ ହୁଏନା । ମାୟା ମାୟା । କହିଁ କଲେଜ କରିଡର୍‌ର ମୁରୁକି ହସିଥିବା ଝିଅଟି ତ ଥରେ କହିଥିଲା 'ତମ ବିନା ମୁଁ ବଞ୍ଚି ପାରିବି ନି, ଚନ୍ଦ୍ର । ଦେଖିବ ତମକୁ ନ ପାଇଲେ ଆତ୍ମହତ୍ୟା କରିପକେଇବି ।

ଅଥଚ କି ସୁନ୍ଦରରେ ସେମାନେ କଟେଇଦେଲେ ପ୍ରତ୍ୟେକ ପ୍ରତ୍ୟେକକୁ ନପାଇ ବି । ଜୀବନଟା ଏମିତି । ଏସବୁ ସୁଗନ୍ଧ ଫୁଗନ୍ଧ ମାୟାଫାୟା ମନେହୁଏ ସୁନାର ହରିଣ । ଶୋଷ ଓଠରେ ନେଇ ନଦୀ ପାରିହୁଏ । ଅଥଚ ଶୋଷ ମେଣ୍ଟାଇ ପାରେନା । ହୁଏତ ବେଳେବେଳେ କ୍ଲାନ୍ତ ସନ୍ଧ୍ୟାରେ, ଏମିତି ଗୁଲଣି ଧାରରେ ସେଇ ଝିଅଟିର କଥା ମନେପଡ଼େ—କିଛିକ୍ଷଣ ସ୍ମୃତିର ଦୁଆର ଖୋଲି ସେ ଅସହାୟ ହୋଇପଡ଼ନ୍ତି । ଓଠରେ ପଡ଼ିଆସୁଥା ଖେଳିବୁଲେ ଗୋଧୂଳି ସମୟର ପବନ । କିନ୍ତୁ ତା'ପରେ ହିଁ ସମ୍ଭାଳି ନିଅନ୍ତି ନିଜକୁ । କିଏ ଆମ୍ବ ତୋଟାରୁ ଖସିପଡ଼ିଥିବା ଭୁଲି ଫଳର ସ୍ମୃତି ଭଲପାଏ ? ଜୀବନଟା ଏମିତି ହିଁ । ପ୍ରେମ ଫ୍ରେମର କିଛି ମାନେ ହୁଏନା । ଜୀବନରେ ବଞ୍ଚି ରହିବାରେ ଅସଲ ଯା' ଲୋଡ଼ା—ସେ ସବୁ ଟଙ୍କା, ପଇସା, ସମ୍ମାନ ଓ ପ୍ରତିପତ୍ତି । ଚନ୍ଦ୍ରନାଥ ଆଜିର ଏଇ ବୟସରେ ପହଞ୍ଚି ଏଇ ନିଗୂଢ଼ ବାସ୍ତବ ସତ୍ୟଟିକୁ ଜାଣି-ପାରିଛନ୍ତି । ଯା'ଛଡ଼ା ଆଉସବୁ ମାୟା । ବାକି ରହନ୍ତି ମିଛ ଟେଢ ସଜେଇ ସଜେଇ ।

ଚନ୍ଦ୍ରନାଥ ପହଞ୍ଚି ଗଲେ ମୃଣ୍ମୟର ମେସ୍‌ରେ । ଗୋଟେ ପିଲା, କୂଅ ପାଖରେ ବସି ଗୁଡ଼ାଖୁ ଘଷୁଥିଲା, ଲୁଙ୍ଗି ପିନ୍ଧି, ଗୁଦର ଘୋଡ଼ିହୋଇ । ସେ ପଚାରି ବୁଝିନେଲେ ମୃଣ୍ମୟର ରୁମ୍ ନମ୍ବର ତା' ପାଖରୁ । ମୃଣ୍ମୟର କୋଠରୀରେ ଦୁଇଟି ଷ୍ଟୋଭିଆ ତକ୍ତପୋଷ ଥିଲା । ତକ୍ତପୋଷ ପାଖରେ ଷ୍ଟୋଭ ଟେବୁଲ ଓ ଚେୟାର । ଦୁ'ଜଣ ପଢ଼ୁଥିଲେ ଦୁ'ଟା ଟେବୁଲ ପାଖରେ । ଖାଲିଥିବା ଚେୟାରଟି ହିଁ ମୃଣ୍ମୟର ଓ ମୃଣ୍ମୟ ନ ଥିଲା । ଚନ୍ଦ୍ରନାଥ ଜଣକ ପାଖରୁ ଜାଣିନେଲେ—ମୃଣ୍ମୟ ଭଉଣୀଙ୍କ ଘରକୁ ଯାଇଛି ।

ସମୁଦ୍ର କୂଳରେ ଠିଆହେଲେ ଯେମିତି ଢେଉ ଆସି ଛୁଇଁ ଦେଇଯାଏ—ସେମିତି ଛୁଇଁ ଛୁଇଁ ଗଲା ସ୍ମୃତି । କେତେ ଦିନରୁ ସେ ଭୁଲିଥିଲେ ଏମିତି

ଜୀବନକୁ ତ । ଷୋଳ ବର୍ଷ ତଳେ ତାଙ୍କର ନ ଥିଲା ଜମି କିଣିବାର ମୋହ, ଘର ତୋଳିବାର ସ୍ୱପ୍ନ, ଝିଅ ବାହା କରିବା ପାଇଁ ଟଙ୍କା ସଞ୍ଚୟର ଚିନ୍ତା । ବହୁତ ଦିନରୁ ସେ ଭୁଲି ଯାଇଛନ୍ତି ଜେହମ ଖବର ଯୌବନକୁ, ଯେତେବେଳେ ଗୋଟେ ଗ୍ରେଟ୍ ଖଟ, ଟେବୁଲ, ଚେୟାର, ଦ'ଟଙ୍କିଆ ପ୍ୟାଣ୍ଟସାର୍ଟ, ଗୋଟେ ରୁଟିନ୍ ଓ ଧୂପକାଠି କିଛି ସାଙ୍ଗରେ କଲେଜର ଗୋଟେ ପଞ୍ଜାବୀଅର ମୁରୁକି ହସ, ତରଳ ତରଳ ଆଖିରେ ତରତର କରି କହି ପକେଇଥିବା କେତୋଟି କଥା କିମ୍ବା ଚିଠିକୁ ଭରସା କରି ସେ ବଞ୍ଚିଥିଲେ । ସେତେବେଳେ ମୁହଁରେ ସୁଖୀ ସୁଖୀ ପ୍ରେମିକର ଦାଗ ଧରି ସେ ସିଗାରେଟ ଟାଣି ପ୍ରେମିକର ଘରୁ ଫେରୁଥିଲେ—ସେଇ ଜୀବନକୁ କେମିତି ପଛୋଉ ଦେଇଥିଲେ ସେଟ !

ଚନ୍ଦ୍ରନାଥ ଭାବିଲେ ଓ ଟେବୁଲ ଉପରୁ ଖୋଲିଲା ବେଳକୁ ସିଗାରେଟ୍ ପ୍ୟାକେଟ୍ଟିଏ । ପ୍ୟାକେଟରେ ମୋଟେ ସିଗାରେଟ ଥିଲା ଓ ଉପର ଭିତରେ ଅଶ୍ଳୀଳ ବହିଟିଏ । ମୃଣ୍ମୟ ସିଗାରେଟ ପିଏ ? ଏସବୁ ପଢେ ? ପ୍ରଥମଥର ପାଇଁ ଧକ୍କା ଖାଇଥିଲେ ସେ । କିନ୍ତୁ ସମ୍ଭାଳି ନେଲେ । ସେ ବି ତ ଦିନେ ଏଇ ବୟସରେ ସିଗାରେଟ ଧରିଥିଲେ, ସେ ବି ତ ଦିନେ ଏଇ ବୟସରେ ଏମିତି ଚଟି ବହି କିଣି ଲୁଚେଇକିନାରେ ଥରେ ଦୁଇଥର ଭସେଇଦେଇଥିଲେ ନିଜର ବୋଇତ ଲବଙ୍ଗ ଦ୍ୱୀପକୁ । ଅଜି ମୃଣ୍ମୟକୁ ଦେଖି ସେଇ ବୋଇତର ସବାରି ଭାବରେ, ଚମକୁଛନ୍ତି କିଆଁ ସେ— ? କାହିଁ, ଚନ୍ଦ୍ରନାଥ ତ ବାଟ ଭୁଲି ଅବାଟରେ ହେଇଯାଇ ନାହାନ୍ତି । ଏମିତି ତ ହୁଏ । ବୟସର ଦୋଷ । ଦୋଷ କି ?

ଚନ୍ଦ୍ରନାଥ ଉଠି ଠିଆହେଲେ ।

ଦ୍ୱାରରେ ଚନ୍ଦ୍ରନାଥ ଭେଟିଲେ ମୃଣ୍ମୟକୁ । ମୃଣ୍ମୟ ଦେଖିଲା ଓ ଆଶ୍ଚର୍ଯ୍ୟ ହେଲା ଓ ନଇଁପଡି ପ୍ରଣାମ କଲା ଓ ପଚାରିଲା : ତମେ କେତେବେଳେ ଆସିଲ ? ତମେ ତ ଖାଇ ନ ଥିବ । ଆମ ମେସ୍‌ରେ ମିଲ୍ ପଡିସାରିଛି । ଆସ ହୋଟେଲରେ ଖାଇନେବା ।

ହୋଟେଲକୁ ଯିବା ରାସ୍ତାରେ ସେଇ ଅକାଂକ୍ଷିତ ପ୍ରଶ୍ନଟି ପଚାରି ପକେଇଲେ ଚନ୍ଦ୍ରନାଥ । କହିଲେ : ମୁଁ ମା'ଙ୍କ ପାଖରୁ ଆସୁଚି । ତୁ ମା'ଙ୍କୁ କ'ଣ ଲେଖିଚୁ ?

ଜହ୍ନ ଲୁଚିଯାଇଚି ମେଘ ଭିତରେ । କୁହୁଡିଆ ଅନ୍ଧାରରେ ସେ ଦେଖି ପାରିଲେନି ମୃଣ୍ମୟର ମୁହଁ । ତା'ର ମୁହଁର ଇମ୍ପ୍ରେସନଟା କେମିତି ଏବେ ଯେ ? ମୃଣ୍ମୟ ଓଲଟି ପଚାରିଲା : କ'ଣ ଲେଖିଚି ?

: ତୁ ନବନୀତାକୁ ବାହା ହେବାକୁ ଚାହୁଁ ?

ଏଥର ଲାଇଟ୍‌ପୋଷ୍ଟ ପାଖକୁ ସେମାନେ ଆସିଯାଇଥିଲେ । ଚନ୍ଦ୍ରନାଥ ଅନେଇଲେ ମୃଣ୍ମୟ ଆଡ଼କୁ । ତା'ର ମୁହଁରେ ଅଦ୍ଭୁତ ହସଟେ ଲାଗିରହିଚ । ହସ ? ନା—ମଣିଷର ପ୍ରକୃତ ଅନୁଭୂତିର ଇମ୍‌ପ୍ରେଶନ ହିଁ ମୁହଁରେ ପଡ଼େନା ? ମୃଣ୍ମୟ କହିଲା : ଲେଖିଚି ।

ଚନ୍ଦ୍ରନାଥ ଚୁପ୍ ହୋଇଗଲେ । ଶତସହସ୍ର ଆକ୍ରୋଶ କହୁଛନ୍ତି ଖେଳୁଛି ତାଙ୍କ ଦେହରେ । ଗମ୍ଭୀର ହୋଇ କହିଲେ : ନନ୍ଦିନୀ ତୋର ଭଉଣୀ ।

ମୃଣ୍ମୟ ସେମିତି ହିଁ ଉତ୍ତର ଦେଲା : ହେଲା ବା ।

: ରକ୍ତର ସମ୍ପର୍କ ।

ମୃଣ୍ମୟ ସେମିତି ହିଁ ଉତ୍ତର ଦେଲା : ହେଲା ବା ।

: ଏଇଟା ପାପ ।

ସେ ସେମିତି ହିଁ ଉତ୍ତରଦେଲା : ହେଲା ବା ।

ଏଇ ପାପବୋଧ ତୋତେ ବ୍ୟସ୍ତ କରିବ ନା ଭବିଷ୍ୟତରେ ? ନନ୍ଦିନୀକୁ ବ୍ୟସ୍ତ କରିବ ନ ? ଭବିଷ୍ୟତରେ ତମେ ଦିହେଁ ହିଁ ଭାବିବନି କି ଯେ ତମେ ଭୁଲ କରିଛ ବୋଲି ? ସେତେବେଳେ କ'ଣ କରିବ ?

ମୃଣ୍ମୟ ସଂକ୍ଷିପ୍ତ ସ୍ୱରରେ କହିଲା : ସେତେବେଳେ ଯା' ଭଲ ଭାବିବା କରିବା ।

ଚନ୍ଦ୍ରନାଥ ଚୁପ । ମନ ଭିତରେ ଅସହାୟର ନିର୍ଜନତା । ସବୁ ପ୍ରଶ୍ନ, ସବୁ ଯୁକ୍ତି ଭାସିଗଲା ଯେମିତି ମୃଣ୍ମୟର ପିଲାଳିଆ ଉତ୍ତରର ଲୁଣିଆ ଢେଉରେ । କିଛିକ୍ଷଣ ଚୁପ ରହି ପଚାରିଲେ : ସମାଜ ? ସମାଜ ମାନିବ କେବେ ?

ମୃଣ୍ମୟର ପାଖରୁ ଯେଉଁ ଉତ୍ତରଟି ପାଇବେ ବୋଲି ସେ ଜାଣିଥିଲେ, ପାଇଲେ । ମୃଣ୍ମୟ କହିଲା : ସମାଜ ଫମାଜ ମୁଁ ମାନେ ନା ।

ଏଥର ଶିମିଳି ତୁଳାର ସାଗ ଫାଟିପଡ଼ି ବର୍ଷି ହୋଇଗଲା : ତୁ ନ ମାନିଲେ ସମାଜ ମାନିବ ?

ମୃଣ୍ମୟ ଏଥର ମୁହଁ ଉଠାଇ କହିଲା, ଦୃଢ଼ାଶକ୍ତ ହୋଇ : ସମାଜ ମୋର କ'ଣ କରିବ ?

ଭବିଷ୍ୟତରେ ତୋର ପୁଅଝିଅଙ୍କର କେଉଁଠି ବାହାଦେବୁ ଭାବି ଦେଖିଛୁ ? ସେମାନେ ଶେଷରେ ତୋତେ ହିଁ ନିନ୍ଦିବେ ।

ମୃଣ୍ମୟର ମୁହଁରେ ଯେମିତ ହସଟିଏ ଲାଗି ରହିଛି । ହସ କି ? କେଜାଣି ।
କହିଲ : ନଥିଲେ ବା । ନାହିଁ ।

ରକ୍ତର ସମ୍ପର୍କରେ ବାହାଘର ହେଲେ ପୁଅଝିଅମାନେ ରୋଗିଣା ହେବେ ।

: ହେଲେ ହେବେ ।

ଏଥର କ୍ଲାନ୍ତ ହୋଇ ଶେଷ ଅସ୍ତ୍ର ଛାଡ଼ିଲେ ଚନ୍ଦ୍ରନାଥ । କହିଲେ : ତୁ ତେବେ ଜାଣିଶୁଣି ଆତ୍ମଘାତୀ ହେବାକୁ ବସିଛୁ ।

ମୃଣ୍ମୟ ଉତ୍ତରଦେଲେ : ହେଲେ ହେଲ ବା ।

ଚନ୍ଦ୍ରନାଥ ଗମ୍ଭୀର ଭାବରେ କହିଲେ ? ପସ୍ତେଇବୁ ଜୀବନରେ ।

ଜହ୍ନ ପୁଣି ମେଘ ପଛରେ । ଅନ୍ଧାରୁଆ କୁହୁଡ଼ି ଉପରେ ଭୁଲିରହି ମୃଣ୍ମୟ କହିଲ କଏ ପସ୍ତେଇନ ଜୀବନରେ ? କଏ ? କୁହ ତ ? ଜୀବନଟା ତ ଅର୍ଥହୀନ ଅର୍ଥହୀନ ବୋଲି ସମସ୍ତେ ଏତେ କହୁଚନ୍ତି । ଜୀବନରୁ କେହି କଛି ପାଆନ୍ତି ନାହିଁ । ଯିଏ ଯା' ପାଏ ସେ ସବୁ ତା'ପାଖରେ ମୂଲ୍ୟହୀନ । ବଞ୍ଚିରହି କେହି ମନୁମେଣ୍ଟ ହୋଇ-ଯାଏ ନା କେବେ । ତମେ କୁହ, ତମ ଜୀବନରେ ତମେ ସବୁ ପାଇଛ ? ଜୀବନଟା ତମ ପାଖରେ ଅର୍ଥହୀନ ନୁହଁ ? ତେବେ କିଆଁ ଏତେ ହିସାବ ନିକାଶ ? ତେବେ କିଆଁ ଏତେ ଭବିଷ୍ୟତର ଚିନ୍ତା ?

ଚନ୍ଦ୍ରନାଥର ମନେହେଲା, ପାଖରେ ଚାଲୁଥିବା ମୃଣ୍ମୟର ଗଳା ଯେମିତି ଭାସି ଆସୁଛି ବହୁତ ଦୂରରୁ । ମୃଣ୍ମୟ ଯେମିତି ବହୁତ ଦୂରେଇ ଯାଉଛି ତାଙ୍କ ପାଖରୁ । ବହୁତ ବହୁତ ବହୁତ ଦୂରକୁ । ସେ ହାତ ବଢ଼େଇଲେ । ମୃଣ୍ମୟ କାହିଁ ? କେଉଁଠି ହେ ?

ରାତି ଅଧରେ ନିଦ ଭାଙ୍ଗିଲେ ଚନ୍ଦ୍ରନାଥଙ୍କର । ଛଅଫୁଟ ବାଇ ପାଞ୍ଚ ଫୁଟର ଛୋଟିଆ ତକ୍ତପୋଷରେ ମୃଣ୍ମୟ ସାଙ୍ଗରେ ଆଉଜାଷ୍ଟ କରି ଶୋଇଥିଲେ ସେ । ନୂଆଜାଗାରେ ଭଲ ନିଦ ହେଲାନି । ପାଖର ନରମ ପରି ଭଲି ସୁଖ କଛକୁ ଘେରି-ବସିଛି ଆଜିର ବୟସ । ଏତେ ସଙ୍କୀର୍ଣ୍ଣ ଜାଗାରେ ଶୋଇ ପାରୁନାହାନ୍ତି ।

ସେ ବାହାରକୁ ଆସିଲେ । ଆକାଶର ନୀଳ ଟେବୁଲରେ ଜହ୍ନ ଗୋଟେ ପେପର ୱେଟ ପଥର । ଶୀତୁଆ ରାତି ଫିସ୍ ଫିସ କରି କାନ୍ଦି ଉଠୁଛି । ଚନ୍ଦ୍ରନାଥ ଅନୁଭବ କଲେ ତାଙ୍କ ଛାତି ଭିତରେ କେଉଁଠି କାନ୍ଦଣା ଝରିପଡ଼ୁଛି । କି କାନ୍ଦଣା ସେ ? ଅସହାୟତା ?

ହୋଟେଲରୁ ଖାଇ ଫେରିଲାବେଳେ ମୃଣ୍ମୟ ପଚାରିଥିଲା—ମୀତା'ମାନଙ୍କର ଘରକୁ ଯିବେ କି ନାହିଁ ବୋଲି । ସେ ଟାଳି ଦେଇଥିଲେ ସକାଳେ ଯିବେ କହି ।

ସନ୍ତୁ ଓ ମୀତା କେତେ ବଡ଼ ହୋଇଯାଇଥିବେ ଯେ ? ଷୋଳ ସତର ବର୍ଷ ତଳେ ସେ ଦେଖିଥିଲେ ସେମାନଙ୍କୁ ଗ୍ରେଟିଆ ଗ୍ରେଟିଆ ପିଲା ଭାବରେ । ମୀତା ତ ଗଣ୍ଡିଟିଏ ପିନ୍ଧି ଲଙ୍ଗଳା ହୋଇ ବୁଲୁଥିଲା । କେତେ ବଡ଼ ହୋଇଗଲାଣି କେଜାଣି ।

ସେଇ ଜାହ୍ନ ରାତିରେ ମୃଣ୍ମୟର ମେମ୍ ସମା କୁଅମୂଳରେ ଠିଆ ହୋଇ ସେ ଦୂରେଇଗଲେ ଅତୀତ ଅଡ଼କୁ ଶୁଣ୍ଣ ଶୁଣ୍ଣ ଗେଟେ ନ ହଙ୍ଗ ଟ୍ରେନର ଗ୍ଲାନିଅପ ହ୍ୱିସିଲ । ଛିଣ୍ଡା ଛିଣ୍ଡା ସ୍ମୃତିର ଟୁକୁରାସବୁ ଘରକଣିଆ ଭଳି ମନର ଘର ଭିତରକୁ ଆସି ପୁଣି ଫୁର କରି ଉଡ଼ିଗଲେ । ପୁଣି ଆସିଲେ ପୁଣି ଗଲେ । ତାଙ୍କର ମନେ-ପଡ଼ିଲା କଲେଜ କରିଡ଼ରର ସେଇ ଝିଅଟି କଥା । କେତେ ଅପାରୁଣା ପ୍ରତିଶ୍ରୁତି ରହିଯାଇଛି ତା ଛାତି ଭିତରେ । ଏସବୁ ଏମିତି ରହିଥିବ ସବୁଦିନ ପାଇଁ ଅପାରୁଣା ହୋଇ ? ବେଳେ ବେଳେ ସୁଧନୀ ରାତିରେ ବାହାରି ଆସି ମନ ତଳରୁ ଗୋଧୂଳି ପବନରେ ତାଙ୍କୁ ଅସହାୟ କରି ଦେଇଯିବ ।

ସେ ଫେରିଆସିଲେ ଘର ଭିତରକୁ ଟାଣିଦେଇ ସନ୍ ଇମୋସନ୍ । ପ୍ରେମ ପ୍ରେମ ସବୁ ମାୟା । ବ୍ୟାଜ କୌଣସି ନିଜସ୍ୱ ବ୍ୟଥା ଅଛି କି ? କଲେଜ କରିଡ଼ରର ପ୍ରତିଶ୍ରୁତିମୟୀ ସେ ଝିଅଟିକୁ ପାଇ ସେ ଆଉ କ'ଣ ବେଶୀ ସୁଖରେ ରୁହନ୍ତେ ଯେ ? ସେ ପ୍ରକୃତିସ୍ଥ ହେଲେ ଓ ସ୍ମୃତିକୁ ଟାଣି ଫିଙ୍ଗିଦେଲେ । ସ୍ମୃତି ତ ସୀସା ଭଳି, ଖାଲି ଛାତି ଭାରି କରି ଯନ୍ତ୍ରଣାରେ ଅସ୍ଥିର କରିବ ।

କିନ୍ତୁ ହଠାତ୍ ମୃଣ୍ମୟକୁ ଦେଖି ଥମକିଲେ । ତା'ର କଦୁଆ ମୁହଁରେ ସେଇ ଅଦ୍ଭୁତ ହସଟିକିକ ଲାଖି ରହିଛି, ଯେଉଁଟା ଦେଖିଥିଲେ ସେ ସନ୍ଧ୍ୟାବେଳେ, ଲାଇଟପୋଷ୍ଟ ତଳେ । ଏଇ ମୃଣ୍ମୟ ତ ସେଦିନ ବି ଗ୍ରେଟ ପିଲାଟିଏ ଥିଲା—ଅଣ୍ଡି କଅଁଳ ପିଲା । ସମୟ କେତେ ଶୀଘ୍ର ଗଡ଼ିଯାଉଛି—ଏକ୍ସପ୍ରେସ ଟ୍ରେନ ଭଳି ତରତର ହୋଇ ।

ସେ ବସିପଡ଼ିଲେ ମୃଣ୍ମୟ ପାଖରେ । ତା'ର ମୁଣ୍ଡ ଅଉଁସିଦେଲେ । ତାଙ୍କ ଛାତି ଭିତରର ବନ୍ଧ ଭାଙ୍ଗିଲେ । ଅଦ୍ଭୁତ ମମତାର ଝରଣା ଝରୁଛି ମନରୁ । ସେ ଅସହାୟ । ଭୀଷଣ ଅସହାୟ । ମୃଣ୍ମୟ ଯେମିତି ଆତ୍ମହତ୍ୟା କରିବାକୁ ଧାଇଁଯାଉଛି ତାଙ୍କ ଆଖି ଆଗରେ ଅଥଚ ସେ ପଥର ହୋଇଯାଇଛନ୍ତି । ଧାଇଁଯାଇ, ହାତ ବଢ଼େଇ ତାକୁ ଅଟକେଇ ରଖି ପାରୁନାହାନ୍ତି ।

ସେ ମୃଣ୍ମୟର କାନପାଖକୁ ନଇଁପଡ଼ି କହିଲେ : ଜୀବନଟା ବାଉଁଶ ଗଛ ଭଳି ଲମ୍ବା ହୋଇପାରେ, କିନ୍ତୁ ହାଲୁକା ନୁହେଁ । ତୁ ବି ଦିନେ ବୁଝିବୁରେ, ପ୍ରେମ ପ୍ରେମ ବୋଲି କିଛିନାହିଁ । ଅଥଚ—

ଅଥଚ ? ତା'ପରେ କ'ଣ କୁହାଯାଇପାରେ ? ସେ ଖବର ପାଇଲେ ନାହିଁ । ଏଇ 'ଅଥଚ' ଶବ୍ଦରେ ହିଁ ଯେମିତି ବଞ୍ଚି ରହିବାର ସବୁ ସତ୍ୟ ଲୁଚି ରହିଛି । ସେ ସତ୍ୟକୁ କିଏ ଜାଣେ ? କିଏ ଜାଣିଛି ? କିଏ ?

ଆମ ଗଳ୍ପକୁ ଏଇଠି ବନ୍ଦ ରଖାଯାଇପାରେ, ପାଠକଗଣ ଜୀବନଟା ତ ବଡ଼ ବହୁତ ବଡ଼ । ଗୋଟିଏ ଗାଳ୍ପିକ କେତେ ଆଉ ଧାଇଁପାରିବ ଜୀବନ ପଛେ ପଛେ ? କେଉଁଠି ନା କେଉଁଠି ତ ଅଟକିବାକୁ ପଡ଼ିବ । କାଲି ସକାଳ ହେଲେ ହୁଏତ ଚନ୍ଦ୍ରନାଥ ଯିବେ ନୀତାମାନଙ୍କ ଘରକୁ । ନୀତା ହୁଏତ ଆସି ପ୍ରଣାମ କରିବ । ସଞ୍ଚୟିତା ହୁଏତ ଟାଇପ ଶିଖି ଫେରୁଥିବ । କହିବ : ମାମୁଁ, ଦି'ପହରରେ ଭାତ ଖାଇକି ଯିବ । ଚନ୍ଦ୍ରନାଥ ହୁଏତ ମନା କରିବେ । ନବନୀତା ହୁଏତ କହିବ : ମାମୁଁ ଆମକୁ ଭୁଲିଗଲେଣି । ମାମୁଁ ବଡ଼ ଲୋକ ।

ହୁଏତ— ।

ଏମିତି ଜୀବନ ବଢ଼ିବ, ସମସ୍ୟା ବଢ଼ିବ । କିନ୍ତୁ ଏ ତ ଜୀବ । ଜୀବନ ତ ଧରାବନ୍ଧା ଫର୍ମୁଲା ଗପ ନୁହଁ ଯେ କୌଣସି ନିର୍ଦ୍ଦିଷ୍ଟ ପରିଚ୍ଛେଦ ଆଡ଼କୁ ଆଗେଇ ଯାଇ କ୍ଲାଇମେକ୍ସରେ ପହଞ୍ଚି ଅଟକି ଯିବ ? ଜୀବନର କୌଣସି କ୍ଲାଇମେକ୍ସ ନାହିଁ । ତେଣୁ ଏଇଠି ହିଁ ଆମେ ଅଟକିଗଲେ, ବନ୍ଧୁଗଣ ଆପଣଙ୍କର କିଛି ଆପତ୍ତି ଅଛି କି ?

ଆମେ ଜାଣୁ, ସଞ୍ଚୟିତା ଅବିନାଶଙ୍କର, ଅବିନାଶ ନବନୀତାର, ନବନୀତା ମୃଣ୍ମୟର, ମୃଣ୍ମୟ ଚନ୍ଦ୍ରନାଥଙ୍କର ଘରର ବାହାରେ ଠିଆହୋଇ ରହିଛନ୍ତି । ସମସ୍ତେ ପରସ୍ପରର ଘରର ଦୁଆର ବାହାରେ ଅଟକି ଯାଇଛନ୍ତି । ଅନ୍ୟର ଘର ଭିତରକୁ ପଶିବାକୁ ପ୍ରତ୍ୟେକ ନାରାଜ । ସମସ୍ତେ ନିଜ ନିଜ ଜାଗାରେ ଠିକ୍ ବୋଲି ଭାବୁଛନ୍ତି । ସେମାନେ ସମସ୍ତେ ଏମିତି ଠିଆହୋଇ ରହିଥିବେ ନିଜ ନିଜ ଜାଗାରେ, ପରସ୍ପରର ଘର ବାହାରେ, ଯୁଗ ଯୁଗ ଧରି । କିନ୍ତୁ ଦୁଃଖ କରିବାର କିଛି ନାହିଁ, ଭାଇମାନେ, ଜୀବନଟା ହିଁ ଏମିତି । ଏମିତି ବିଚିତ୍ର । ଏମିତି ବିଚିତ୍ର ଜୀବନ ଗଢ଼ିଆସିଛି ଯୁଗ ଯୁଗ ଧରି । ଜୀବନର ସବୁ ସ୍ଥିତିଶୀଳତା ଅନାକ୍ରମଣୀୟ । ପ୍ରଶ୍ନାତୀତ । ପରସ୍ପରର ଘରର ଏରୁଣ୍ଡି ବନ୍ଦ ବାହାରେ ଠିଆହୋଇ ଯୁଗ ଯୁଗ ଧରି ମଣିଷ ବଞ୍ଚିଆସିଛି । ବଞ୍ଚି ରହିବ । ଶା । ନ୍ତି । ଶେ ।

---

# କାନ୍ଦୁରୀ

ଶ୍ରୀ ଦାଶ ବେନହୁର

ବୋଧହୁଏ ସେ ଜନ୍ମହେବା ପରଠାରୁ ବୋଉର ବ୍ୟକ୍ତିଗତ କୋହଲା ଜୀବନଟିରେ ବାରମ୍ବାର ଗଣ୍ଠି ପଡ଼ି ଆସିଲା । ନିଜସ୍ୱ ସମସ୍ତ ସମୟ ବୋଉର ଅନ୍ୟଗତ ହେଲା । ନିର୍ଦ୍ଦିଷ୍ଟ ହୋଇଗଲା । ଖୋଲା ଫୁଲଫାଙ୍କିଆ ମାଆ ମନଟି ତା'ର ଏକ ବିଶେଷଭାବେ ନିର୍ଦ୍ଦିଷ୍ଟ ବାଧ୍ୟ ଅଭ୍ୟାସରେ ବାନ୍ଧି ହୋଇଗଲା । ମାଆ ହେଲା ପରେ ପ୍ରତ୍ୟେକ ନାରୀର ଅଧିକାଂଶ ସମୟ ସନ୍ତାନଗତ ହୁଏ । ତଥାପି ତା' ଭିତରେ ବି ଟିକେ କୋହଲାଭାବ ଥାଏ, ଟିକେ ସ୍ୱାଧୀନତା ଥାଏ । କିନ୍ତୁ କାନ୍ଦୁରୀର ଜନ୍ମ, ବୋଉର ସେଇ ସ୍ୱାଧୀନତା ଟିକକ ମଧ୍ୟ ଛଡ଼େଇନେଲା ।

ଅଭ୍ୟାସଗତ ତତ୍ପରତା ନେଇ ବୋଉ ମୋର ରାତି ପାହାନ୍ତାରୁ ଉଠିପଡ଼େ । କି ବର୍ଷା, କି ଶୀତ; ସବୁ ସମୟରେ ତା'ର ସେଇ ରାତିପାହାନ୍ତା । ତତ୍ପର ଦେହଟିରୁ ନିଦ ଝାଡ଼ିଦେଇ, ସେଇ ଅସହଜ ତନ୍ଦ୍ରିଳ ସମୟଟିରେ ସେ ଶେଯରୁ ଉଠିଯାଏ । ମୋତେ ଚିଡ଼ମାଡ଼େ ତା'ର ଏଇ ଜବରଦସ୍ତ ଅଭ୍ୟାସଟି ପାଇଁ । ଶୋଇବାର ସେଇ ସକାଳୁଆ ରାଜକୀୟ ମୁହୂର୍ତ୍ତଟିକୁ ନଷ୍ଟକରିଦେବାରେ ସେ ଯେ କି ଆନନ୍ଦ ପାଏ, ମୁଁ ବୁଝି-ପାରେନା । କିନ୍ତୁ ବ୍ରତକଲାଭଳି ବୋଉ ସେଇ ନିଦଗୁଡ଼ା ସମୟଟାରେ ହିଁ ଉଠେ । ଏଇ ଉଠିବାର ଅଭ୍ୟାସ ବୋଧେ କାନ୍ଦୁଣୀ ବୋଉକୁ ଶିଖେଇଥିଲା । ବାଧ୍ୟ କରିଥିଲା । ତେଣୁ ଅପତ୍ୟତାର ବାଧ୍ୟତାରେ ବୋଉ ଉଠିପଡୁଥିଲା ବୋଲି ମୁଁ ନିଜକୁ ନିଜେ ସଫେଇ ଦଉଥିଲି । କିନ୍ତୁ ସେଇ ବାଧ୍ୟତାଟିକୁ ବୋଉ ନିଜେ ସୃଷ୍ଟି କରିଥିଲା ଖାସ୍ କାନ୍ଦୁଣୀ ପାଇଁ । ଏଇମିତି ପ୍ରତିଦିନର ପ୍ରଥମ ଜୀବନ, ବୋଉ କାନ୍ଦୁଣୀ ପାଇଁ କିଛି ନିଦର ନୈବେଦ୍ୟରେ ଆରମ୍ଭ କରୁଥିଲା ।

ଶେଯରୁ ଉଠିପଡ଼ି ବୋଉ ଘରସାରା ବାଣ୍ଟି ହୋଇପଡ଼େ । ଅଗଣାରେ ଗୋବରପାଣି ପକା, ଗୋରୁଙ୍କ ପାଇଁ ଆହାର ଉଷୁଆଁ, ବାସନ ମଜା, ଧୁଆଁଘର ଲିପା ଆଦି ସବୁକାମରେ ସେ ଯେମିତି ଗୋଟିକପରେ ଗୋଟିଏ ପାହାଚ ଓହ୍ଲେଇ ଯାଏ । ତା'ର ନିଜର ଦାନ୍ତ ଘଷିବା, ଝାଡ଼ାଯିବା ଓ ଗାଧୋଇବାରେ ଯେ କିଛି ସମୟ ଖର୍ଚ୍ଚ ହୁଏ, ସେକଥା ମୁଁ ଅନୁମାନ କରିପାରେନା ଅନ୍ୟ ସମସ୍ତଙ୍କର ସେଇ କାମଗୁଡ଼ାକ ପାଇଁ ଖର୍ଚ୍ଚ ହେଉଥିବା ନିଜପଣିଆଁଟା ତା'ପାଖରେ କେମିତି ନଥାଏ କେଜାଣି ?

ବୋଉର ଏଇ ପାହାଚ ପରେ ପାହାଚ ତରତର କାମରେ ମଧ୍ୟ ତା'ର କାନଟି କାନ୍ଦୁଣୀ ପାଖରେ ଲାଗି ରହିଥାଏ । କାଳେ କାନ୍ଦୁଣୀ ଉଠିପଡ଼ିବ ? କାମ ପରେ କାମକୁ ବାଣ୍ଟି ହୋଇଯିବାର ଘରଣୀପଣିଆଁ ବୋଉର କାନ୍ଦୁଣୀ ପ୍ରତି ଦୃଢ଼ ସଚେତନତାର ଅଧୀନ ହୋଇଯାଇଥିଲା ଯେମିତି । କାନ୍ଦୁଣୀ କାଳେ ଶେଯରୁ ଉଠି ପଡ଼ିବ, ତେଣୁ ବୋଉ, ଅନେକ ଆଗରୁ ଶେଯରୁ ଉଠିପଡ଼ି କାନ୍ଦୁଣୀର ସେବାପାଇଁ ନିଜକୁ ପ୍ରସ୍ତୁତ କରି ଦେଇଥାଏ ।

ମୁଁ ସବୁ ଦିନ ଶେଯରୁ ଉଠିଲାବେଳକୁ, ଶୋଇବା ପୂର୍ବରୁ ଯେଉଁ ସତେଜ ତତ୍ପର ବୋଉଟିକୁ ଦେଖିଥାଏ, ସେଇ ବୋଉଟିକୁ ପୁଣି ଦେଖେ । ଦିନ ଦିନ ଧରି, ଯୁଗ ଯୁଗ ଧରି ସେଇ ଅପରିବର୍ତ୍ତନୀୟାକୁ ।

ଘରର ଏବଂ ବାହାରର ଧାରାବାହିକ କାମଗୁଡ଼ିକ ସରିଯିବାରେ, ବୋଉ କାନ୍ଦୁଣୀକୁ ଉଠେଇ ଦିଏ । ଦିନେ ଦିନେ ସେ ଗାଧୋଇ ସାରି ଆସୁ ଆସୁ, କାନ୍ଦୁଣୀ ଶେଯ ଉପରେ ଶୋଇ ରଡ଼ି କରିବା ଆରମ୍ଭ କରି ଦେଇଥାଏ । ସାମାନ୍ୟ କଥାରେ ରଡ଼ି କରିବାପାଇଁ ଚୁକ୍ତିକରି, ବୋଧେ ସେ ଜନ୍ମ ହୋଇଥିଲା । ଛୋଟ ପିଲାମାନଙ୍କର ସରଳ ନିଷ୍ପାପ ହସଟିଏ, କାନ୍ଦୁଣୀ ଓଠରେ ମୁହୂର୍ତ୍ତିକ ପାଇଁ ଝୁଲିଯିବାର ମଧ୍ୟ ମୁଁ କେବେ ଦେଖିନି । ସବୁବେଳେ ତା'ର ସେଇ କାନ୍ଦ । ଉହୁ ଉହୁ ବିକଳ କାନ୍ଦ । କାନ୍ଦର ଭୀଷଣ ନଇବଢ଼ି ଟିଏ ବିସ୍ତାରି ଦେଇ, ସେ ତା'ର ଅଭିଯୋଗ, ଆବଶ୍ୟକତା ଓ ସ୍ଥିତିକୁ ସବୁବେଳେ ସାବ୍ୟସ୍ତ କରୁଥିଲା । ସେଥିପାଇଁ ଜେଜେବାପା, ତାର ନାଁ ଦେଇଥିଲେ କାନ୍ଦୁଣୀ । ତା'ର ବୟସ ବଢ଼ିବା ପରେ ମଧ୍ୟ ଭଲ ନାଁଟିଏ ଦେବା ପାଇଁ କେହି କେବେ ଭାବି ନାହାନ୍ତି । ପ୍ରକୃତରେ ଆବଶ୍ୟକତା ମଧ୍ୟ ପଡ଼ି ନ ଥିଲା । ଛୋଟ ଭଉଣୀ ବା ଛୋଟ ଭାଇକୁ କାଖରେ ଧରି କମ୍ବା ଦେହରେ ଜଡ଼ାଇ ଭାଇପଣିଆର ବୋ'କଟିଏ ତା' ଗାଲରେ ଅଜାଡ଼ି ଦେବାର ବଳବତୀ ଇଚ୍ଛାଟିକୁ, ମୋତେ କାନ୍ଦୁଣୀର ସେଇ ଅସରା ଅସରା କାନ୍ଦର ହାବୁକା ଯୋଗୁଁ ଦୂରେଇ ରଖିବାକୁ ପଡ଼ିଥିଲା । ତାକୁ କାଖରେ ଧରିବାର ସାହସ ମୋର ସେଥିପାଇଁ ସବୁବେଳେ ପରାହତ । କାନ୍ଦୁଣୀ ଖାଲି କାନ୍ଦେନି ତ ; ସତେ ଯେମିତି କାନ୍ଦର ଛିନଛତର ଖଣ୍ଡି ଆଖୋବରା ରକ୍ତଛିଟା ପାଖଆଖରେ ବିଞ୍ଚାଡ଼ି ଦିଏ । କାନ୍ଦ ଥିଲା, କାନ୍ଦୁଣୀର ଜନ୍ମଗତ ଅସମ୍ଭବ ରୋଗଟିଏ । ରାମାୟଣର ନାଭିଦୈତ୍ୟ, ତା ମା' ପେଟରେ ଥାଇ ଖାଇବାକୁ ମାଗିଲାପରି, କାନ୍ଦୁଣୀ ବୋଧେ ବୋଉର ପେଟ ଭିତରୁ ରଡ଼ି କରିବା ଆରମ୍ଭ କରି ଦେଇଥିଲା ।

ଘରେ କାନ୍ଦୁଣୀର ଏଇ ଉତୁଆଣି କାନ୍ଦ କେହି ସହିପାରନ୍ତି ନି । ସମସ୍ତେ ଚଡ଼ି ଚଡ଼ି ହୁଅନ୍ତି । ହେଲେ ବୋଉ ସହେ । ବରୁଡ଼ି ତା'ର ତୀକ୍ଷ୍ଣ ଅଣ୍ଟରେ

ଜୀମୂତବାହନଙ୍କୁ ଖୁର୍ମି ଗଲପରେ, କାନ୍ଦୁଣିର କାନ୍ଦ, ନିଶ୍ଚିତଭାବରେ ବୋଉଙ୍କୁ ଖିନଭିନ୍ କରି ପକାଉଥିବ । କିନ୍ତୁ ବୋଉ ନିଷ୍ଫଳ । ସବୁବେଳେ ତା'ର ସେଇ ଅନାଗ୍ରସ୍ତ ମ'ଉଳା ମୁହଁ । ସେଇ ଆହୁରି ସ୍ୱୀକୃତ । ସବୁବେଳେ ସେଇ ପୁରୁଣା ତାଳର ଗୃହ । କିଛି ବିକାର ନାହିଁ । ଆଖି ଡ଼ୋଳାର ଉଃ ଶବ୍ଦଟିଏ ବି ନାହିଁ । କାନ୍ଦୁଣି କାନ୍ଦର ଉଦ୍ଧ ଉଦ୍ଧ ଝାମୁ ଗୃହରେ ବୋଉ ତା'ର ସେଇ ଅପ୍ରତିହତ କାମରେ ସବୁବେଳେ ତତ୍ପର ଥାଏ । କାନ୍ଦୁଣିର କାନ୍ଦ; କାନ୍ଦୁଣିର ବିକଳ ସ୍ଥିତି ଯେମିତି, କିଛି ଘଟଉନି । ସବୁ ଯେମିତି ଶୁଭଙ୍କର ।

କାନ୍ଦୁଣିକୁ ଦୁଇ ବରଷ ହେଲାବେଳକୁ, ଜଣାପଡ଼ିଯାଇଥିଲା ଯେ, ସେ କଥା କହି ପାରିବ ନାହିଁ, ତାଙ୍କୁ କିଛି ଶୁଭୁନି । ପୁଣି କିଛିଦିନ ପରେ ଜଣାପଡ଼ିଲା, ସେ ଚାଲିବାକୁ ବି ଅକ୍ଷମ । ଅଣ୍ଟାଠାରୁ ଉପରକୁ. ଠିକ୍ ଶରୀରର ବୃଦ୍ଧି ହେଉଥିବାବେଳେ, ତା'ର ଗୋଡ଼ ଯୋଡ଼ିକ ସେମିତି ଦୁଇଟା ସଜନା ଛୁଇଁଭଳି ଲମ୍ବି ରହିଥିଲା । ସେଥିରେ ମୋଟେ ମାଂସ ଲାଗୁ ନ ଥିଲା । ସବୁବେଳେ ସେ ମୁଣ୍ଡଟାକୁ ଏପଟ ସେପଟ କରି ଗଡ଼ାଏ । ମୁଣ୍ଡ ଗଡ଼ାଇବା ଓ ଅସମ୍ଭବ ତାଳରେ କାନ୍ଦିବା ଥିଲା, ତା'ର ଦୁଇଟି କାମ । ବାପା ତାକୁ ଦେଖିଲେ, ତାଙ୍କର ମୁହଁ ଶୁଖିଯାଏ । ତାଙ୍କର ବାପପଣିଆର କଳଙ୍କ ଗୃହପଟେ ଅସହାୟତା ଗୁଡ଼େଇ ହୋଇଯାଏ । କାନ୍ଦୁଣିକୁ ଧରିବା ପାଇଁ ସେ କେବେ ହାତ ବଢ଼ାନ୍ତି ନାହିଁ । ତା'ଜନ୍ମ ପରଠାରୁ ବାପାବୋଧେ ତାଙ୍କ ଅଜାଣତରେ ହାରି ଯାଇଥିବାଭଳି, ନିଜ ଭିତରେ ନିଜେ ସଙ୍କୁଚିତ ହୋଇ ଯାଇଥିଲେ । କାନ୍ଦୁଣି ଭଳି ଜନ୍ମ ଅଭାଗିନୀ ଝିଅର ବାପ ହେବାରେ ଦୁର୍ଭାଗ୍ୟରେ, ବାପାଙ୍କ ଜୀବନର ସଫଳତା ନିଶ୍ଚିତଭାବରେ ଚୂର୍ଣ୍ଣ ହୋଇଯାଇଥିଲା । ସେ ଅଥର୍ବ ହୋଇଯାଇଥିଲେ, ଏଇ କାନ୍ଦୁଣିର ଝିଅ ବଡ଼ା'ସରେ ।

ଆମ ଘରେ କାନ୍ଦୁଣିକୁ କେହି ଧରନ୍ତି ନି । ତା'କଥା କେହି ବୁଝନ୍ତି ନି । କେବଳ ବୋଉ ବୁଝେ । ତା'କୁ ଚାରି ବରଷ ହେଲାବେଳକୁ, ବୋଉର କହିବାରେ କାନ୍ଦୁଣି ପାଇଁ ବାପା ଗୋଟିଏ ଝୁଲୁଣି ଚଉକି ତିଆରି କରେଇ ଆଣିଥିଲେ । ଝାଡ଼ା ଯିବା, ଗାଧୋଇବା ଓ ଶୋଇବା ସମୟ ତକ ଛଡ଼ା, କାନ୍ଦୁଣି ଅଣ୍ଟାରେ ଗୋଟିଏ କନାର ପଟି ବାନ୍ଧି ତା'କୁ ସେଇ ଝୁଲୁଣି ଚଉକିଟିରେ ବାନ୍ଧି ଦିଆଯାଇଥାଏ । ସବୁବେଳେ ସେ ସେଇ ଚଉକିଟିରେ ବସି ଏପଟ ସେପଟ ଝୁଲୁଥାଏ । ତା'କୁ ଅସୁବିଧା ଲାଗିଲେ କିମ୍ବା ତାର କିଛି ଦରକାର ହେଲେ; ଯଥା: ଝାଡ଼ାଯିବା, ପରିସ୍ରା କରିବା, ଖାଇବା, ଶୋଇବା ଦରକାର ପଡ଼ିଲେ, କାନ୍ଦୁଣି କାନ୍ଦର ଅସମ୍ଭବ ଧମକରେ ତା'ର ଆପତ୍ତି ଜଣାଏ । ଯଦି କେହି ନ ଶୁଣନ୍ତି, ତେବେ କାନ୍ଦୁଣି ତାର ହାତ ଦୁଇଟାକୁ କାମୁଡ଼ିକରି, ଲହୁ ଲୁହାଣ କରିଦିଏ । ସମସ୍ତ ସମୟରେ ମୁଣ୍ଡ

ବାଲ ବି ଛିଣ୍ଡାଇ ପକାଏ । ସେଥିପାଇଁ ଅଧିକାଂଶ ସମୟରେ ବୋଉ, ତା ପାଖେ ପାଖେ ଥାଏ ।

କାଦମ୍ବିନୀର ଆତ୍ମଘାତୀ ପ୍ରବୃତ୍ତିଟାକୁ ସମ୍ଭାଳିବା ପାଇଁ ବୋଉ ଯେଉଁ କଷ୍ଟ ପାଉଥିଲା, ଦେଖିଲେ ମୋ ମନ ଦୁଃଖରେ ଶଫୁଣ୍ଡି ହୋଇଯାଏ । ମୁଁ ଭାବୁଥିଲି, ବୋଉର ସୁଖଟା କ'ଣ ? ଏତେ କଷ୍ଟରେ ବି, ସେ କାଦମ୍ବିନୀ କାଦମ୍ବିନୀ ହେଉଛି । କାଦମ୍ବିନୀ ଉପରେ ବୋଉ କେବେ ରାଗେନ, ତା ବିରୁଦ୍ଧରେ ଆପତ୍ତି କରେନା; ଓଲଟି ନିଜେ କାନ୍ଦେ । ନିଜର ମାତୃତ୍ୱକୁ ନିନ୍ଦା କରେ, ନିଜର ପେଟକୁ ଗାଳିଦିଏ । ବୋଉର ଏ ଅବସ୍ଥା ଦେଖି ମୋତେ ଭୀଷଣ କଷ୍ଟ ଲାଗେ । କାଦମ୍ବିନୀ ଉପରେ ମୋର ଘୃଣାଟା ବଢ଼ି ଯାଏ । ଏ ଚଣ୍ଡାଳୁଣୀଟା ମରି ଯାଆନ୍ତା କି ? ନିଜେତ କାହିଁ କେତେ ପ୍ରତି ମୁହୂର୍ତ୍ତରେ ମରୁଛି; ଅନ୍ୟକୁ ମଧ୍ୟ, ମଲା ସମାନ କଷ୍ଟ ଦେଉଛି । ମତେ ଲାଗେ ବୋଉ ତା'ର ସମସ୍ତ ସ୍ନାୟୁ, ସମସ୍ତ ମାତୃତ୍ୱକୁ ନିଗାଡ଼ି ଦେଇ ଗୋଟିଏ ଶବକୁ ଜଗି ବସିଛି । କାଦମ୍ବିନୀର ଏଇ ଜୀଅନ୍ତା ଶବଟିକୁ ।

କାଦମ୍ବିନୀ ପ୍ରତି ଅତ୍ୟଧିକ ନିଘା ଯୋଗୁଁ, ବୋଉ ଆମମାନଙ୍କ ପାଖରୁ ଦୂରେଇ ଯାଉଥିଲା । ସବୁବେଳେ କାଦମ୍ବିନୀର ସେଇ ଜୀଅନ୍ତା ଶବଟା ବୋଉର ସରଳ ସମଗ୍ରତାକୁ ଆମଠାରୁ ଛଡ଼େଇ ନେଇ, ନିଜେ ପୋଷି ପୋଷି ଆତ୍ମସାତ କରି ଚାଲିଥିଲା । ଆମମାନଙ୍କର ବୋଉ ସମ୍ପର୍କିତ ସବୁଯାକ ବାତ୍ସଲ୍ୟ ସ୍ୱଚ୍ଛତାକୁ ତା'ର କାନ୍ଦର ଲହ ଲହ ଜିଭରେ ଚାଟି ଯାଉଥିଲା । ଏଇଥିପାଇଁ ବେଳେବେଳେ ପ୍ରତିବାଦର ବିଷ, ମୋ ଭିତରେ ଫଣା ଟେକୁଥିଲା । କିନ୍ତୁ ପ୍ରତି ଥର ବୋଉ ପାଖେଇ ଆସି, ଗାଲରେ ଚୁମ୍ବା ମୁଣ୍ଡରେ ହାତ ମାରିଦେଲେ ସେ ଫଣା ମଉଳିଯାଏ । ତା' କାନିର ପେଣ୍ଡି ଭିତରେ ମୁଣ୍ଡ ଗୁଞ୍ଜି ସେଇ ଅଭିମାନିଆ ମୁହୂର୍ତ୍ତକ ଶୋଇଯିବା ପାଇଁ ମନ କଳ କଳ ହୋଇପଡ଼େ ।

କାଦମ୍ବିନୀ ଜନ୍ମହେବା ପରଠାରୁ, ନିଶ୍ଚିତ ଭାବରେ ବୋଉ ଆମ ଭାଇଭଉଣୀ ମାନଙ୍କଠାରୁ ଟିକିଏ ଦୂରେଇଗଲା । ଆମେ ସମସ୍ତେ ଅସ୍ଥିରେ, ପଞ୍ଜରାରେ, ମାଂସରେ, ରକ୍ତରେ ଏ କଥାଟି ସବୁ ବେଳେ ଅନୁଭବ କରୁଥିଲୁ । ଘରର ନିହାତି ଦରକାର କାମଗୁଡ଼ିକ କରି ସାରିବା ପରେ, ସାଧାରଣଭାବେ ଆମମାନଙ୍କ ପାଇଁ ତା'ର ଯେଉଁ ସମୟତକ ଖର୍ଚ୍ଚ କରିବାର କଥା, ସେ ସମୟତକ କାଦମ୍ବିନୀ ପାଇଁ ବୋଉ ପୁରା ଖର୍ଚ୍ଚ କରିଦେଉଥିଲା । ବୋଉର ଏ ପକ୍ଷପାତି ଭାବଲା ପାଇଁ ମୁଁ ଅନେକ ଅଭିମାନ କରିଛି, ରୁଷିଛି । ଆହତ ହେବାବେଳେ, ମୁଁ ଅନ୍ଧାରୁଆ କୌଣସି ଏକ ବଖରା ଭିତରେ ପଶିଯାଇ ଆଖିରେ ଲୁହ ଟେଳାଇ, ମନେ ମନେ ବୋଉକୁ ଅନେକ ଗାଳି କରିଛି ।

କହୁଛି : "ଖାଲି ଏକୁଟିଆ ଇଏ ବୋଉ ହେଇଚି । ଆଉ କେହି ଯେମିତି ବୋଉ ହେଇ ନ ହାନ୍ତି ! ଟୁକୁନା ବୋଉ, ଟୁକୁନା ରୁଷିଲେ କେମିତି ଗୋଡ଼ରେ ବସେଇ ଝୁଆଇ ଦିଏ । ଇଆର କନ୍ଦୁ ସବୁବେଳେ କାନ୍ଦୁଛି । ଆମକୁ ଟିକିଏ ପଢ଼ୁଦୁନି ।" ହେଲେ ମନରେ ଯେତେ ରାଗିଲେ ବି, ମୁଁ ବୋଉ ମୁହଁରେ କିଛି କହିପାରେ ନା । ରାଗିବାର କିଛି ସମୟ ତ ହୋଇଗଲେ ମତେ ଲାଗେ ଯେମିତି ମୋର ସବୁ ଭୁଲ୍ । ବୋଉର କିଛି ଦୋଷ ନାହିଁ । ସେ କେବେ ବସି ରହୁନାତ ? ସବୁବେଳେ କିଛି ନା କିଛି କାମରେ ଲାଗିଚି । ଦାଣ୍ଡପଟରୁ ବାଡ଼ିପଟକୁ ଦଉଡ଼ୁଚି । ବୋଉର ଏ ଖଟଣୀ, ମୋ ମନ ଭିତରେ କେମିତି ଏକ ବୁଝିପାରିବାର ବୁଦ୍ଧି ସୃଷ୍ଟି କରିଦିଏ । ଖରାଦିନେ ଦ୍ୱିପହରରେ ସମସ୍ତେ ଶୁଅନ୍ତି । ହେଲେ ବୋଉ ଶୁଏନା । ଶୋଇବାକୁ ସମୟ ପାଏନା । ଏଇମିତି ଅନେକ କଥା । ମୋ ବୟସର ପ୍ରତିଟି ଆଗୁଆ ପାଦର ତାଳସହ ବୋଉର କାନ୍ଦୁରୀ ପ୍ରତି ମମତା ମୋ ନିକଟରେ ଅଧିକରୁ ଅଧିକ ମହତ୍ତ୍ୱ ହୋଇ ଉଠୁଥିଲା ।

କନ୍ଦୁ ଭଉଣୀ ହେଲେବି, ତା' ପ୍ରତି ମୋର ମମତା ଜାଗେନି । ମୁଁ ତା'ପାଇଁ ଦୁଃଖ କରିପାରେ ନି । କାହିଁକି ନା କରନ୍ତି ? ଅନ୍ୟ ସାଙ୍ଗସାଥୀମାନଙ୍କ ଘରେ ସେମାନଙ୍କର ବୋଉମାନଙ୍କୁ ଖୁସିଗପ ହେବାର, ବୁଲିବାର, ସିନେମା ଥିଏଟର ଯିବାର ଦେଖିଲାବେଳେ ଘରକୁ ଫେରି ମୁଁ ଦେଖେ କୌଣସି କାମର ଓଜନଟିଏ ପିଠିରେ ପକେଇ ବୋଉ ମୋର ନିଷ୍ଠଳ ମୁହଁରେ ସେମିତି ପାଦ ଓଟାରୁଛି । ବିଶେଷକରି ଅଧିକାଂଶ ସମୟରେ ସେ ସେଇ କାନ୍ଦୁଣୀ କାମରେ ଲାଗିଛି । ତା' ଗୁଅ, ମୁତ ଲୁଗାପଟା ସଫା କରିବା, ଖୁଆଇବା, ପିଆଇବା, ଶୁଆଇବା ଇତ୍ୟାଦି ଇତ୍ୟାଦି । ସେଥିପାଇଁ ବୟସ ମତେ ବୁଦ୍ଧିଆ କରିବା ସଙ୍ଗେ ସଙ୍ଗେ ବେଶୀ ବେଶୀ ଦୁଃଖୀ ମଧ୍ୟ କରି ଦେଉଥିଲା ।

ବର୍ଷକରେ ଥରେ ଅଧେ ବାପଘରକୁ ଯିବାପାଇଁ ପ୍ରତ୍ୟେକ ବିବାହିତା ସ୍ତ୍ରୀ ଚାହେଁ । ଶ୍ୱଶୁର ଘର ଆପଣାର ଘର ହେଲେ ବି ବାପଘରକୁ ଛାଡ଼ି ହୁଏନା । ରକ୍ତର ପ୍ରଥମ ସମ୍ପର୍କଟିକୁ ଛିଣ୍ଡାଇ ହୁଏନା । ତେଣୁ ବୋଉ ମଧ୍ୟ ମାମୁଁ ଘରକୁ ପ୍ରତିବର୍ଷ ପ୍ରାୟ ମାସେ ଲେଖାଏଁ ଯାଉଥିଲା । କିନ୍ତୁ କାନ୍ଦୁଙ୍କର ଜନ୍ମ ପରଠାରୁ ସେ ଆଉ ମାମୁଁ ଘରକୁ ଯାଇ ପାରିଲା ନି । ମାମୁଁ ଘର ସମ୍ପର୍କର ନଚିକେତାଟିକୁ ବୋଉ କାନ୍ଦୁଙ୍କର ଜୀବନଯଜ୍ଞରେ ଉତ୍ସର୍ଗ କରିଦେଇଥିଲା । ମାମୁଁ ଘରକୁ ଯିବାପାଇଁ ଯେତେବେଳେ ଡାକରା ଆସେ ସେ କହେ "କାନ୍ଦୁକୁ ଛାଡ଼ି କେମିତି ଯିବି ? ତାକୁ ବି ତ ସାଙ୍ଗରେ ନେଇ ହବନି ।" ଏଇ କାନ୍ଦୁଣୀ ଯୋଗୁଁ, ବୋଉ ଆଉ କେବେ ମାମୁଁ ଘରକୁ ଯାଇପାରିଲା ନି । ତା'କୁ ଗାଣ୍ଡିକାଠ ପରି ତଳେ ପକାଇ ସେ ପଡ଼ି ରହିଲା ।

ବାପା ବୋଉଙ୍କର ପରସ୍ପର ସମ୍ପର୍କରେ ମଧ୍ୟ କାଦମ୍ବରୀଯୋଗୁଁ ଅନେକ ଝଡ଼ ସୃଷ୍ଟି ହୋଇଥିଲା । ଏହି ଝଡ଼ରେ କିନ୍ତୁ ବୋଉ କେବେ ହାରିଯାଇନି । ସବୁବେଳେ ବିଘୃଣାପର, ସବଳ ଆନ୍ତରିକଭାବରେ ନିଜର ଶକ୍ତି ଓ ସାମର୍ଥ୍ୟକୁ ଖଟାଇ ସେ ପ୍ରତିରୋଧ କରିଛି । ପେଙ୍ଗୁଇନ, ବରଫର ବିସ୍ତୀର୍ଣ୍ଣ ପଡ଼ିଆ ଉପରେ ନିଜର ପାଦର ଉପରି ଭାଗରେ ଅଣ୍ଡାଟିକୁ ଥାପି, ଉଷୁମ ଦେଇ, ନିଜେ ସକଳ ଅସ୍ତ୍ରା ସହିଲାଭଳି, ବୋଉ ସବୁ ଦୁଃଖକୁ ନିଜ ଭିତରକୁ ଟାଣି ନେଉଥିଲା ।

କାଦମ୍ବରୀର ଖାଦ୍ୟ ଥିଲା କେବଳ କ୍ଷୀର । ସେ ନିଜ ହାତରେ କିଛି ଖାଇ ପାରେନା । ପୁଣି, ତା'ର ପିଲାଦିନର ଅଭ୍ୟାସଯୋଗୁଁ ତା'କୁ କ୍ଷୀର ଛଡ଼ା ଅନ୍ୟ କିଛି ଖାଇବାକୁ ଦେଲେ ତା'ର ପେଟ ଫାମ୍ପେ, ବାର ବିକୃତ ବାହାରେ । ତେଣୁ ସବୁବେଳେ ତା'ର ଖାଦ୍ୟ ଥିଲା କେବଳ କ୍ଷୀର । ଆଠ ବରଷର ହେବାବେଳକୁ ସେ ଦିନକରେ ଚାରି ଲିଟର କ୍ଷୀର ପିଇ ଦେଉଥିଲା । ଘରେ ଆମର ଗାଈ ଥାଆନ୍ତି । ତେଣୁ କିଛି ଅସୁବିଧା ହୁଏ ନାହିଁ । କିନ୍ତୁ ହଠାତ୍ ସେଇ ବର୍ଷ ସବୁ ଗାଈଯାକ ପଡ଼ିଆ ହୋଇଗଲେ । ଘରେ ଆଉ କ୍ଷୀର ଦୁହାଁ ହେଲାନାହିଁ । ସେଥିପାଇଁ କ୍ଷୀର କିଣି କାଦମ୍ବରୀକୁ ଦେବାକୁ ହେଲା । ପ୍ରତିଦିନ ଚାରି ପାଞ୍ଚ ଲିଟର କ୍ଷୀର କିଣିବା ଆମର ଦୁର୍ବଳ ମଧ୍ୟବିତ୍ତ ପରିବାର ପକ୍ଷରେ କଷ୍ଟକର ହୋଇପଡ଼ିଲା । ଏଇ କଷ୍ଟଟା ବାପାଙ୍କ ମୁହଁରେ ଦିନେ ଭାଷା ନେଲା । ସେ ବୋଉକୁ କହିଲେ, "କାଦମ୍ବରୀକୁ ଏଥର ଚାଉଳ ପାୟସ କରି ଖୁଆଅ । ଭାତ ଡାଲିରେ ତାକୁ ଆସ୍ତେ ଆସ୍ତେ ଅଭ୍ୟସ୍ତ କର । ଆଉ କେତେଦିନ ତା'କୁ ଏମିତି ଖାଲି କ୍ଷୀରରେ ଚଳାଇବା । ପୁଣି ଆଜିକାଲି ତ କ୍ଷୀର କେତେ ମହଙ୍ଗା ହେଉଛି । ସବୁବେଳେ କ୍ଷୀର କିଣି କ'ଣ ଖୁଆଇ ହବ ?" ବାପାଙ୍କର ଏଇ କଥାରେ ବୋଉ ସେଦିନ ଖୁବ୍ ଆହତ ହୋଇଥିଲା । କଥା କହୁ କହୁ ସେ କଇଁ କଇଁ ହୋଇ ଅନେକ କାନ୍ଦିଥିଲା । କହିଥିଲା, "ତମର କେତେଆଡ଼େ କେତେ ଟଙ୍କା ଖର୍ଚ୍ଚ ହେଉଛି । ଜନ୍ମରୁ ତ ସେ ହତଭାଗୀ । ଭଲ ଥିଲେ ତା'ପାଇଁ ଜାମାପଟା, ସ୍କୁଲ ଯିବା, ବେଡ଼ାଇବା ଖେଳିବାରେ କେତେ ଖର୍ଚ୍ଚ ହେଉ ନ ଥାନ୍ତା ? ସବୁବେଳେ ଖାଲି ପଡ଼ିରହିଛି ବୋଲି ତା' ଖାଇବାଟା ତମକୁ ଦିଶୁଛି । ମୁଁ ଅଲକ୍ଷଣୀ ତ ଏମିତି ତାକୁ ହୀନମାନ୍ୟ କରି ଜନ୍ମ ଦେଇଛି, ତାର ଦୋଷ କଣ ? ତାକୁ ଜନ୍ମ କରିବା ପୂର୍ବରୁ ମୁଁ ମରି ନ ଗଲି ଯାହା । ତମ ଗୋଡ଼ ଧରୁଚି, ଏମିତିଆ କଥା କେବେ ଆଉ କହିବ ନି; ଯାହା ଖର୍ଚ୍ଚ ହେଉଚି ପଛେ ହେଉ ।" କେଡ଼େ ଜଟିଳତାପୂର୍ଣ୍ଣ ଏ ବୋଉର ସମ୍ପର୍କ ! କେଡେ ଆଶ୍ୱାସନାମୟ ସ୍ନେହର ପରିଧି !

ମୁଁ ପାଖରେ ଠିଆ ହୋଇଥିଲି । ବୋଉର ଏ କଥା ସବୁ କାନ୍ଦ ମତେ ଖୁବ୍ ବିକଳ କରି ପକେଇଥିଲା । ମୁଁ ଅନୁଭବ କରିଥିଲି, ମୋ ଦେହସାରା ରକ୍ତ

ବଦଳରେ ଯେମିତି ଲୁହ ଭରିଯାଉଛି । ବୋଉର ସେଇ ପେଟ ଲୁହରେ ମୁଁ ଭର୍ତ୍ତି ହୋଇ ଯାଇଥିଲି । ଧନ୍ୟ ମୋର ବୋଉ ! ଧନ୍ୟ ତା'ର ମାଆ ପଣିଆ । ଭଗବାନ କରନ୍ତୁ, ଜନ୍ମେ ଜନ୍ମେ ମତେ ଏଇ ବୋଉ ମିଳୁ । ବିଶେଷକରି, କାନ୍ଦୁଣୀପରି ପ୍ରତ୍ୟେକ ଅଭାଗିନୀ ଝିଅଙ୍କୁ ଏମିତିଆ ବୋଉ ମିଳୁଥାଆନ୍ତୁ । ମୋର ମନେ ପଡ଼ୁଥିଲା, କୋଉଠି ଗୋଟେ ପଢ଼ିଥିଲି, "ଭଗବାନ ସବୁ ଜାଗାରେ ସବୁବେଳେ ଉପସ୍ଥିତ ରହି ପାରିବେ ନ ବୋଲି ଏଇ ବୋଉ ଜାତିଟାକୁ ସୃଷ୍ଟି କରିଛନ୍ତି ।"

ବୋଉର ସେଇ କଥା ଶୁଣିବା ପରେ, ବାପା ଆଉ ପଦେ କଥା କହି-ନାହାନ୍ତି । କାନ୍ଦୁଣୀର କ୍ଷୀର ପିଇବା ମଧ୍ୟ କେବେ ବନ୍ଦ ହୋଇନାହିଁ ।

କାନ୍ଦୁଣୀର ବୟସ ବଢ଼ିଲା, କିନ୍ତୁ ତା'ର ଆଉ କିଛି ଶାରୀରିକ ଉନ୍ନତି ହେଲା ନା । ବୟସ ତା' ପାଖରେ ହାରି ଯାଇଥିଲା କି, ସେ ବୟସ ପାଖରେ ହାରିଯାଇ ଥିଲା କେଜାଣି ? ହେଲେ ଜୀବନକୁ ଓ ଜୀବନର ସ୍ଥିତିକୁ ସ୍ୱୀକାରଭଳି କରି, ସେ ସେଇ ଝୁଲୁଣି ଚଉକିଟିରେ କେବଳ ଝୁଲି ରହିଲା । ଚଉଦ ପନ୍ଦର ବର୍ଷ ହେଲେ ମଧ୍ୟ କାନ୍ଦୁଣୀ, ଶୁଖୁଆ ପୋକଖିଆ ଫଳଟିଏ ପରି ସେଇ ଝୁଲୁଣି ଚଉକିଟିରେ ଲାଗି ରହି-ଥିଲା । ଖାଲି ଯାହା ଖଣ୍ଡିଆ ଟାବରା ଜୀବନ୍ତ ସ୍ଥିତିଟିଏ । ସେଇ ସ୍ଥିତି ଆମ ପରିବାରର ଠିକ୍ ମଝି ଯାଗାରେ ଆସ୍ଥାନ ମାଡ଼ି ବସିଥିଲା । ଆମ ପରିବାରର ସ୍ୱତଃ କୋଳାହଳ ଓ ସୁଖଶାନ୍ତି ଭିତରେ କାନ୍ଦୁଣୀ ଦୁଃଖ ଯନ୍ତ୍ରଣାର ନିରବଚ୍ଛିନ୍ନ ହାଣ୍ଡିଆ ଘଣ୍ଟିଟିଏ ପିଟି ଚାଲିଥିଲା ବୋଧେ ।

ଠିକ୍ ପନ୍ଦରବର୍ଷ ବେଳକୁ, କାନ୍ଦୁଣୀ ଦେହର ହାଡ଼ସବୁ ମିଳେଇ ଯିବାକୁ ଲାଗିଲା । ହାଡ଼ ଭିତର ସବୁ ଫମ୍ପା ହୋଇଗଲା । ତା'ର ଦେହଗତ ଶେଷ ହାଡୁଆ ସ୍ଥିତିଟିକୁ ମଧ୍ୟ ଭଗବାନ ଅସ୍ୱୀକାର କରିବାକୁ ଆରମ୍ଭ କରିଦେଲେ । ଦିନ ପରେ ଦିନ ସେ ସଙ୍କୁଚିତ ହୋଇ ଆସିଲା ଗୋଟିଏ ମାଉଁସ ମେଞ୍ଚାକୁ । ସେଇ ବୟସରେ, ଯୌବନର ଜୁଆର ବଦଳରେ ମୃତ୍ୟୁର ବିଭୀଷିକା ତା' ଦେହରେ ଦୋହଲିବାକୁ ଲାଗିଲା । କାନ୍ଦୁଣୀର ଏ ଅବସ୍ଥା ଘରେ ସମସ୍ତଙ୍କର ମନରେ ଏକ ହତାଶିଆ ବିକଳତା ବୁଣି ଦେଇଥିଲା । ସେ ଦିନକୁ ଦିନ ଘୃଣ୍ୟ ହୋଇଯାଇଥିଲା । ତା' ମରଣ ପାଇଁ ଅସ୍ପଷ୍ଟ ମାଗୁଣୀଟିଏ ଯେମିତି ସମସ୍ତଙ୍କ ଅନ୍ତରରେ, ଏକ ଅଜାଣତ ଅନିବାର୍ଯ୍ୟ ହୋଇଯାଇ-ଥିଲା । ପ୍ରତି ମୁହୂର୍ତ୍ତରେ ବୋଧେ ସମସ୍ତେ କାନ୍ଦୁଣୀ ମୃତ୍ୟୁର ସତ୍ୟଟିକୁ ବାଟ ଚାହିଁ ବସିଥିଲେ ।

କିନ୍ତୁ ବୋଉ ଏ ସବୁର ବାହାରେ ଥିଲା । ସବୁବେଳେ ବୋଉ ଯେମିତି ଏକ ଅଲୌକିକ ପରିବର୍ତ୍ତନକୁ ଅପେକ୍ଷା କରିଥିଲା । ସେ ଭାବୁଥିଲା କାନ୍ଦୁଣୀ ବୋଧେ ଏକ

ସାମୟିକ ଭେଟରେ ସନ୍ତୁଷ୍ଟ ହୁଏଁ ଘରେ ସବୁଦିନ ସେ ମୁଣ୍ଡପିଟି ମାଗୁଣି କରେ, ହେ ଭଗବାନ ମୋ କାଦମ୍ବରୀଟିକୁ ଭଲ କରିଦିଅ । ପ୍ରତିଦିନ ଔଷଧ ପାନେ କାଦମ୍ବରୀ ପାଟିରେ ପୂରେଇ ଦେଲାବେଳେ ବୋଉ ମନକୁ ମନ କହେ, ଖାଇଦେ ମୋ ସୁନାଠା ପରୀ, ଭଲ ହୋଇଯିବୁ । ଅନ୍ୟ ସମସ୍ତେ କାଦମ୍ବରୀର ମୃତ୍ୟୁକୁ ପ୍ରଚ୍ଛନ୍ନ ଭାବେ ଅପେକ୍ଷା କରିଥିବାବେଳେ ବୋଉ କାଦମ୍ବରୀର ଭଲ ହୋଇଯିବାର ସମ୍ଭାବନାକୁ ଦୃଢ଼ ବିଶ୍ୱାସର ସହ ଅପେକ୍ଷା କରିଥିଲା । ତା'ର ଏଇ ଗୋଟିକ ବୋଲି ଝିଅକୁ ମାଆ ହିସାବରେ ଶଙ୍କା ହୁଲହୁଲି ଭିତରେ ବଞ୍ଚାଇରଖିବାର ସମ୍ଭାବନାଟିକୁ ବୋଉ ଅପେକ୍ଷା କରିଥିଲା ମଧ୍ୟ । ମାଆ ଭାବରେ ସେଇ ବଞ୍ଚାଯିବାଟିକୁ ହିଁ ସେ ଅପେକ୍ଷା କରିଥିଲା, ଅନ୍ୟ କୌଣସି ଆଶଙ୍କିତ ବଞ୍ଚାଯିବା ନୁହେଁ ।

ଶାରୀରିକ ସଙ୍କୋଚନ ସତ୍ତ୍ୱେ କାଦମ୍ବରୀର କାନ୍ଦ ସଙ୍କୁଚିତ ହୋଇ ନ ଥିଲା । ବରଞ୍ଚ ଆହୁରି ଅଧିକ ଅନ୍ତରଭେଦୀ ହୋଇ ଯାଇଥିଲା । ଅଧିକ ଅସହ୍ୟ ହୋଇ ଉଠିଥିଲା । ଶେଷକୁ କେତେ ଦିନେ ବୋଉ ନିଜକୁ ନିଜେ ବିରକ୍ତ ହୋଇ ପକାଉଥିଲା; "ତୁ ମରେ ନ ଖାଇ ଗ୍ରାନ୍ତବୁନ । ଏମିତି କାନ୍ଦ କାନ୍ଦ, ମୋ ହାଡ଼କୁ ମାଉଁସ ମଧ୍ୟ ତୁ ଝଡ଼େଇ ଦବୁ । ତୋ ସହ ମୁଁ ମରିଗଲେ ନାହିଁ ପାଇଯାଆନ୍ତି । ଭଗବାନ ମୋ ଡାକ କାହିଁକି ଶୁଣୁ ନାହାନ୍ତି କେଜାଣି ?" ମୁଁ ବୁଝିଥିଲି, ବୋଉର ଏ ବିରକ୍ତି, କେବଳ ତା' ଦେହର, ମନର ନୁହଁ । ମଣିଷ ହିସାବରେ ଏକ ସାମୟିକ ବିରକ୍ତି, କିନ୍ତୁ ମାତୃତ୍ୱର ବିରକ୍ତି ନୁହଁ । କାରଣ ସେଇ ବୋଉ ବି ସମୟ ସମୟରେ କାଦମ୍ବରୀର ମୁଣ୍ଡ କୁଣ୍ଡେଇ ଦେଇ, ଆଖିରେ କଜ୍ଜଳ ଦେଇସାରି କହି ପକାଉଥିଲା, "ମୋ କାଦମ୍ବରୀଟିର ଚାହାଣି ଖୁବ୍ ସୁନ୍ଦର ।"

ସେଇ ବର୍ଷ ମୁଁ ଗାଁ ପାଖ ସରକାରୀ କଲେଜରେ ଅଧ୍ୟାପକ ଭାବେ ଯୋଗ ଦେଇଥାଏ । ସକାଳ ସାଢ଼େ ନଅଟାରେ ଘରୁ ଯାଇ ସନ୍ଧ୍ୟା ସାଢ଼େ ପାଞ୍ଚଟାକୁ ଘରକୁ ଫେରେ । ଦିନେ ଏଇମିତି ଫେରୁଚି, ଏଇ ସମୟରେ ବୋଉର ଛାତିଫଟା କାନ୍ଦଣା ଶୁଣିବାକୁ ପାଇଲି । ବେକ ଛିଡ଼ିଯାଇ ରକ୍ତ ପିଚ୍ ପିଚ୍ ଛୁଟିକି ଆସିବା ପରି, ବୋଉର ସମଗ୍ର ସତ୍ତାରୁ ସେ ବିକଳ କାନ୍ଦଣା ଛୁଟିକି ଆସୁଥିଲା । ମୁଁ ହତଭମ୍ବ ହୋଇଗଲି । ପ୍ରଥମେ କିଛି ବୁଝିପାରିଲି ନି । ବହୁଦିନରୁ ଅପେକ୍ଷା କରାଯାଇଥିବା ଏକ ନିଶ୍ଚିତ ମୃତ୍ୟୁର ସତ୍ୟତା ପ୍ରତିପାଦନରେ ଯେ ବୋଉ ଏତେ ବିକଳ ହୋଇ କାନ୍ଦିପାରେ, ସେ ଧାରଣା ମୁଁ କରିପାରି ନ ଥିଲି । କାଦମ୍ବରୀ ମରି ଯାଇଥିଲା । ତା କାନ୍ଦର କୋଳାହଳ ବନ୍ଦ ହୋଇ ଯାଇଥିଲା ।

ବୋଉ କାଦମ୍ବରୀର ସେଇ ମାଂସର ମେଞ୍ଚା କୁଢ଼ ଉପରେ ନିଜକୁ ସମ୍ପୂର୍ଣ୍ଣ ଅଜାଡ଼ି ଦେଇ, କାନ୍ଦର ରୋଳ ଛୁଟାଇଥିଲା, "ମୋ ଧନରେ, ନୟନର ପସରା, ଏତେ

କଷ୍ଟ କରି ତତେ ଜଗି ବସିଥିଲି, ଶେଷରେ ମତେ ଏକଲା କରି ଗଲୁରେ ଧନ ! "ମୁଁ ଅଭାଗିନୀ ତୋତେ ବଞ୍ଚେଇ ରଖି ପାରିଲି ନା । ତୁ ଚାଲିଯିବା ଆଗରୁ ମୋ ମାଆ-ଘଣ୍ଟିଆକୁ ଯାହା ଆଗେ ମରଣ ହେଲାନରେ ମୋ ସୁନା !"

ଏତେ ଦିନର କଷ୍ଟର ଅବସାନ ପରେ ମଧ୍ୟ ବୋଉ କାନ୍ଦୁଚି । କନ୍ଦୁରିର କାନ୍ଦମୟ ଜୀବନ ସ୍ଥିତିକୁ ବଞ୍ଚେଇ ରଖିପାରିଲା ନା ବୋଲି ନିଜକୁ ଧିକ୍କାର କରୁଚି । ସେମିତି କାନ୍ଦୁରୀ ମରିବ ବୋଲି ସେ ଆଗରୁ ମୋଟେ ଜାଣି ନ ଥିଲା, କି ଭାବି ନ ଥିଲା । ସୁସ୍ଥ ସବଳ ଭେଣ୍ଡାଟିଏ ମରିଯାଇଥିବା ପରି ବୋଉ କାନ୍ଦୁଚି ।

ଆଖିରେ ଲୁହ ସହ ମୋ ହୃଦରେ ଏକ ଅଭିଭୂତଭାବ ବିସ୍ତରି ଯାଉଥିଲା ! ମାତୃତ୍ୱର ସରଳ ସତ୍ୟ ଓ ନିଃସ୍ୱାର୍ଥ ସ୍ନେହ, ବୋଉର ଏଇ ଉଚ୍ଛଳ ବିକଳ କାନ୍ଦଣା, ମୋ ଭିତରେ ଅଧିକରୁ ଅଧିକ ମର୍ମାହତ ହେଉଥିଲା ।

---